Mr Anil kumar Panigrahy

# ... ଆରମ୍ଭ ହେଉ ସ୍ବଚ୍ଛ ଚଟକା ସୁଆଦ ନେଇ ...

ଶ୍ରୀ ଅନିଲ୍ କୁମାର୍ ପାଣିଗ୍ରାହୀ

Anil Kumar Panigrahy




ଓ ଭିୟାରମେଣ୍ଟର ଚଟକା
ବିଶେଷ ଫର୍ମୁଲାର ଦ୍ରୁତ
...ଇ ଯାଉଥିବା ଫେଣରେ
...ା ପରିଷ୍କାର, ନିଶ୍ୱାସରେ
...।

ଟୁଥପେଷ୍ଟ ଦ୍ୱାରା ଦାନ୍ତ
...କେ ହେଲେ ବିରକ୍ତି ଲାଗେ
...ପାଇଁ ଭାରି ମଜା ।
...ଘରର ପିଲାମାନେ ମଧ୍ୟ

ଏହି ଟୁଥପେଷ୍ଟରେ ଦାନ୍ତ ମାଜିବାକୁ
ଖୁବ୍ ଭଲ ପାଇବେ ।

ଆଜିହିଁ ନୂଆ ପଣ୍ଡସ ଟୁଥପେଷ୍ଟ
କିଣନ୍ତୁ ।

ଜୀବନର ପ୍ରତିଟି
ସକାଳକୁ
କରନ୍ତୁ ସୁନ୍ଦର,
ସାର୍ଥକ ।





ନୂଆ
# ପଣ୍ଡସ
ଟୁଥପେଷ୍ଟ

# ଶ୍ୱାସ ର ଦୁର୍ଗନ୍ଧ ଦୂର କରନ୍ତୁ . ଦାନ୍ତକଣା ର ପ୍ରତିରୋଧ କରନ୍ତୁ

# କଲଗେଟ ର ସୁରକ୍ଷା-ଚକ୍ର ନଜର କରନ୍ତୁ !

କଲଗେଟରେ ନିୟମିତଭାବେ ଦାନ୍ତ ସଫା କଲେ
ଆପଣଙ୍କ ପରିବାରରେ ସମସ୍ତଙ୍କର ଶ୍ୱାସ ତାଜା ଓ ପରିଷ୍କାର ଏବଂ ଦାନ୍ତ ମଜବୁତ
ଓ ସୁସ୍ଥ ରହେ ଅର୍ଥାତ କଲଗେଟର ସୁରକ୍ଷା ମିଳେ ।

ଦେଖନ୍ତୁ କଲଗେଟର ନିର୍ଭରଯୋଗୀ ଫର୍ମୁଲା
...ଲ ଆପଣଙ୍କ ଦାନ୍ତର ସୁରକ୍ଷା କରେ :



ଦାନ୍ତ ସନ୍ଧରେ ରହିଯାଇଥିବା ଖାଦ୍ୟକଣା
ଦ୍ୱାରା ଶ୍ୱାସରେ ଦୁର୍ଗନ୍ଧ ଓ ଦାନ୍ତ କଣା
କରୁଥିବା ଜୀବାଣୁ ବଢନ୍ତି ।



କଲଗେଟର ଅପୂର୍ବ ପ୍ରଭାବଶାଳୀ ଫେଣ
ଦାନ୍ତ ସନ୍ଧରେ ଲୁଚିଛପି ରହିଥିବା ଖାଦ୍ୟକଣା
ଓ ଜୀବାଣୁଙ୍କୁ ବାହାର କରିଦିଏ ।



କଲଗେଟରେ ନିୟମିତଭାବେ ଦାନ୍ତ ସଫା



# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାରେ ପରିବେଷିତ ବେତାଳ କଥା ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ କାହାଣୀ । ଏହାର ମୂଳ ଲେଖକ 'ଦେବପ୍ରିୟ' । ପ୍ରଥମେ ଏହା ଇଂରାଜୀ 'ଚନ୍ଦାମାମା'ରେ ପ୍ରକାଶ ପାଇଥିଲା । ଆଶାକରୁଁ ପାଠକ-ପାଠିକାମାନେ ଏହା ବିଶେଷ ଭାବରେ ଉପଭୋଗ କରିବେ ।

## ଅମରବାଣୀ

ତାବଦ୍ ଭୟସ୍ୟ ଭେତବ୍ୟଂ, ଯାବଦ୍ ଭୟମନାଗତମ୍ ।
ଆଗତଂ ତୁ ଭୟଂ ବୀକ୍ଷ୍ୟ ନରଃ କୁର୍ଯ୍ୟାଦ ଯଥୋଚିତମ୍ ॥

[ଯେ ପର୍ଯ୍ୟନ୍ତ ବିପଦ ନ ଆସିଛି, ସେ ପର୍ଯ୍ୟନ୍ତ ତାକୁ ଭୟ କରିବା ଉଚିତ—ଅର୍ଥାତ୍ ତାକୁ ଏଡ଼ାଇବାର ଚେଷ୍ଟା କରିବା ଉଚିତ । କିନ୍ତୁ ଥରେ ବିପଦ ଆସିଗଲେ ଆଉ ତାକୁ ଭୟ ନକରି ବରଂ ସେଥିରୁ ମୁକୁଳିବାର ଚେଷ୍ଟା କରିବା ଉଚିତ ।]

ବର୍ଷ : ୨୦ ଡିସେମ୍ବର ୧୯୮୭ ଅଙ୍କ : ୭

ପ୍ରତି ସଂଖ୍ୟା : ଟ. ୨ ୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



## ମଣିଷ-ବହୁଳ ବସ୍ତି

ଏ ଶତାବ୍ଦୀ ଶେଷ ହେବା ବେଳକୁ ବୋମ୍ବେ, କଲିକତା ଏବଂ ଦିଲ୍ଲୀ ପୃଥିବୀର ସର୍ବାଧିକ ଦଶଟି ଜନବହୁଳ ମହାନଗରୀ ତାଲିକାର ଅନ୍ତର୍ଭୁକ୍ତ ହୋଇଥିବେ । ବର୍ତ୍ତମାନ ପୃଥିବୀର ସବୁଠାରୁ ଜନ-ବହୁଳ ନଗରୀ ହେଲା ମେକ୍ସିକୋ-ସିଟି । ଏହାର ଜନସଂଖ୍ୟା ଏକ କୋଟି ଅଶୀ ଲକ୍ଷ । ଏକବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଏହାର ଜନସଂଖ୍ୟା ଦୁଇକୋଟି ତେଷଠି ଲକ୍ଷ ହୋଇଥିବା ସମ୍ଭବ । ସେତେବେଳକୁ ସାଓ ପାଓଲୋ ନଗରୀର ଜନସଂଖ୍ୟା ହୋଇଥିବ ଦୁଇକୋଟି ଚବିଶ ଲକ୍ଷ ଓ ଟୋକ୍ୟୋ-ୟୋକୋହାମାର ଜନସଂଖ୍ୟା ଏକ କୋଟି ସତୁରି ଲକ୍ଷ ଟପି ଥିବ ।



## ପ୍ରଚେଷ୍ଟାର ବିଜୟ

ଜାପାନର ୟୋଶିଓ ଫୁରୁଇଟ (ବୟସ ୪୨) ଗୋଟିଏ ଦୁର୍ଘଟଣାରେ ଛୋଟା ହୋଇ ଯାଇଥିଲେ । ତଥାପି ସେ ଜାପାନର ଫୁଜି ପର୍ବତ ଆରୋହଣ କରିଥିଲେ ଓ ନିକଟରେ ସେ ହିମାଳୟର ଏକ ପର୍ବତ ଆରୋହଣ କରି ପାରିଛନ୍ତି ।



## ପ୍ରଚଣ୍ଡ ନିଶ!

କାଲିଫର୍ଣ୍ଣିଆର ଜିମ୍ ମିରେଲ୍ ପୃଥିବୀର ଦୀର୍ଘତମ ନିଶର ଅଧିକାରୀ । ପାଞ୍ଚବର୍ଷର ଚେଷ୍ଟା ଫଳରେ ସେ ସତର ସେଣ୍ଟିମିଟର୍ ଲମ୍ବ ନିଶ ଉପୁଜାଇ ପାରିଛନ୍ତି ।

# ଉର୍ବଶୀ

ସୃଷ୍ଟିର ପ୍ରଥମ ଯୁଗରେ ଏକ ବିଶେଷ ଘଟଣା ଘଟିଥିଲା । ତାହା ହେଲା ଦେବତା ଓ ଅସୁରଙ୍କ ସହଯୋଗରେ ସମୁଦ୍ର ମନ୍ଥନ । ମନ୍ଥନ ଚାଲିଥିବା ଅବସ୍ଥାରେ ସମୁଦ୍ର ଗର୍ଭରୁ ବହୁ ମୂଲ୍ୟବାନ ଚିଜ ବାହାରିବା ସଙ୍ଗେ ସଙ୍ଗେ ବାହାରିଥିଲେ ଅନନ୍ୟା ସୁନ୍ଦରୀ ଅପ୍ସରା—ଉର୍ବଶୀ ।

ଉର୍ବଶୀ ଦେବରାଜ ଇନ୍ଦ୍ରଙ୍କ ରାଜସଭାରେ ନୃତ୍ୟ ସଙ୍ଗୀତ ପରିବେଷଣ କରୁଥାନ୍ତି । ଦିନେ ଭୂପୃଷ୍ଠର ଜଣେ ମହାନ୍ ନରପତି ପୁରୁରବ ଇନ୍ଦ୍ରଙ୍କ ରାଜସଭାକୁ ଯାଇଥାନ୍ତି । ନୃତ୍ୟରତା ଉର୍ବଶୀଙ୍କୁ ଦେଖି ସେ ମୁଗ୍ଧ ହେଲେ । ଉର୍ବଶୀ ମଧ୍ୟ ତାଙ୍କ ପ୍ରତି ଆକୃଷ୍ଟ ହେଲେ । ଫଳରେ ତାଙ୍କ ନୃତ୍ୟରେ ବାରମ୍ବାର ଭୁଲ୍ ହେଲା । ଇନ୍ଦ୍ର ଅବସ୍ଥା ବୁଝି ଉର୍ବଶୀଙ୍କୁ କହିଲେ, "ତମେ ରାଜା ପୁରୁରବଙ୍କ ବଧୂ ହୁଅ ଓ ମର୍ତ୍ତ୍ୟରେ ଯାଇ ରୁହ ।" ଉର୍ବଶୀଙ୍କ ପାଇଁ ସ୍ୱର୍ଗ ତ୍ୟାଗର ନିର୍ଦ୍ଦେଶ ଅଭିଶାପ ଭଳି ହେଲା । କିନ୍ତୁ ପୁରୁରବଙ୍କ ପାଇଁ ସେ ଏ ସର୍ତ୍ତ ବିନା ଆପତ୍ତିରେ ପାଳିନେଲେ । ନିଜ ସହିତ ସେ ଆଣିଥିଲେ ଯୋଡ଼ିଏ ସୁକୁମାର ମେଷ ଶାବକ ।

ଚାରିବର୍ଷ ବିତିଗଲା । ସ୍ୱର୍ଗବାସୀମାନେ ତାଙ୍କୁ ଭୁଲିପାରୁ ନଥିଲେ । ଥରେ ରାତିରେ ଝଡ଼ବର୍ଷା ବେଳେ ଦେବତାମାନେ ଆସି ସେ ମେଷ ଶାବକଙ୍କୁ ଚୋରାଇ ନେଲେ । ଉର୍ବଶୀ ରାଜାଙ୍କ ସହ ଉଆସ ବାହାରକୁ ବାହାରିଗଲେ ସେ ଦୁଇଟିଙ୍କ ସନ୍ଧାନରେ । ସଙ୍ଗେ ସଙ୍ଗେ ଦେବତାମାନେ ଉର୍ବଶୀଙ୍କୁ ସ୍ୱର୍ଗକୁ ନେଇଗଲେ । ରାଜା ପୁରୁରବ ପାଗଳ-ପ୍ରାୟ ହୋଇଗଲେ । ତେବେ ଅବଶେଷରେ ସ୍ୱର୍ଗରେହିଁ ସେ ପୁନର୍ବାର ଉର୍ବଶୀଙ୍କ ସହ ମିଳିତ ହେଲେ ।





# ବୀରୁର ଗୋଦାନ

ନରସିଂହପୁରର ଜୟୀଦାସ ଜଣେ ଜଣାଶୁଣା ଲୋକ ଥିଲେ । ତାଙ୍କର ବେଶ୍ କିଛି କ୍ଷେତ-ବାଡ଼ି ଥିଲା ଓ ସେ ଦାନ ଧର୍ମ ବି କରୁଥିଲେ । ଲୋକେ ତାଙ୍କୁ ଖାତିର କରୁଥିଲେ ।

କିନ୍ତୁ ଜୟୀଦାସଙ୍କ ମୃତ୍ୟୁ ପରେ ତାଙ୍କର ଏକମାତ୍ର ପୁଅ ବୀରୁ ଯେତେବେଳେ ସମ୍ପତ୍ତିର ଅଧିକାରୀ ହେଲା, ଦେଖାଗଲା ତା' ସ୍ୱଭାବ ପୂରା ବିପରୀତ । ସେ ଅତ୍ୟନ୍ତ କୃପଣ ।

"ଆରେ ବାବୁ, ମୁଁ ତ କାହାର କିଛି ଅନ୍ୟାୟ କରୁନାହିଁ, ମୁଁ ପଇସା ସଞ୍ଚିଲେ ମୋ ସମ୍ପତ୍ତିରୁ ଆୟ କରି ସଞ୍ଚୁଛି, ନହେଲେ ମୋ ବୁଦ୍ଧି ଖଟାଇ ସଞ୍ଚୁଛି, ଅନ୍ୟ କାହାର ସେଥିରେ କ'ଣ ଯାଏ ଆସେ ? ବାପା ଦାନଧର୍ମ କରୁଥିଲେ କାରଣ ସେଥିରୁ ସେ ଆନନ୍ଦ ପାଉଥିଲେ । ମୁଁ ସେଥିରୁ ଆନନ୍ଦ ପାଏ ନାହିଁ । ବାସ୍, କଥା ସରିଲା ।" ବୀରୁ ଏଇଆ କହି ତା' ବୋଉ ଓ ତା' ସ୍ତ୍ରୀଙ୍କର ଯେ କୌଣସି ଦାନଧର୍ମର ପ୍ରସ୍ତାବକୁ ଉଡ଼ାଇଦିଏ ।

ତା' ମନୋଭାବ ଯୋଗୁଁ ନିଜ ଲୋକେ ଦୁଃଖିତ ହୁଅନ୍ତି । ପାଖ ପଡ଼ୋଶୀ ଲୁଗୁଇ ଲୁଗୁଇ ହସନ୍ତି । ତେବେ କୌଣସି ଟିକା-ଟିପ୍‌ଣୀ ପ୍ରତି ବୀରୁର ଭ୍ରୂକ୍ଷେପ ନଥାଏ । ସେ ତା' ନିଜ ସନ୍ତୋଷରେ ରହିଥାଏ । ଦିନ ବେଶ୍ କଟୁଥାଏ । ସବୁଦିନ ଯେ ସମାନ ଯାଏ ନାହିଁ, ସେ ବିଷୟରେ ସେ କେବେ ଚିନ୍ତା କରୁ ନଥାଏ ।

ଥରେ ସେ ବେମାର ପଡ଼ିଲା । ଯେତେ ପ୍ରକାରେ ଇଲାଜ କଲେ ମଧ୍ୟ ରୋଗ ଉପଶମର ଲକ୍ଷଣ ଦେଖାଗଲା ନାହିଁ । ତା' ବୋଉ କହିଲେ, "ବୀରୁ, ଥରେ ତୋ ବାପା ଏହିପରି ଅସୁସ୍ଥ ହୋଇଥିଲେ । ସେ ଜଣେ ବ୍ରାହ୍ମଣକୁ ଗୋଟିଏ ଗୋଦାନ କଲେ । ଦେଖାଗଲା,

କତରି ଘୋଡ଼ ହେଲେ, ଯମ କି ଛାଡ଼େ ଭଲେ ?



ତା'ପରେ ସେ ଭଲ ହୋଇଗଲେ। ତୁ ବି ସେଇଆ କର।"

"ବୋଉ, ବେମାର ସହିତ ଗୋଦାନର ସମ୍ପର୍କ କ'ଣ? ସେସବୁ ଅନ୍ଧ ବିଶ୍ୱାସ।" ବାବୁ ବୋଉଙ୍କ କଥା ଉଡ଼ାଇଦେବା ଢଙ୍ଗରେ କହିଲା।

ବୋଉ ନୀରବ ରହିଲେ। ବାବୁ ଗୋଟାଏ ପରେ ଗୋଟାଏ ଔଷଧ ଖାଉଥାଏ। ବିଶେଷ କରି କେହି ଯଦି ମାଗଣାରେ କିଛି ପରାମର୍ଶ ଦେଉଥାଏ କିମ୍ବା ମାଗଣାରେ ବା ଅଳ୍ପ ପଇସାରେ ମିଳିବା ଭଳି ଚିଜ କଥା କହୁଥାଏ, ତେବେ ବାବୁ ବେଶ୍ ଉତ୍ସାହରେ ସେଭଳି ଔଷଧ ସେବନ କରୁଥାଏ। ଫଳ କିଛି ହୁଏ ନାହିଁ। ଦିନେ ବୋଉ ଖୁସି ଥରେ ତା' ଆଗରେ ଗୋଦାନ ପ୍ରସ୍ତାବ ଉଠାଇଲେ।

"ପୁଅ, ଯିଏ ଗୋଦାନ ପାଏ, ସିଏ ମନେ ମନେ ଦାତାର ଶୁଭକାମନା କରେ। ଶୁଭକାମନାର ମୂଲ୍ୟ ବହୁତ।" ବୋଉ କହିଲେ।

ବାବୁ ମଙ୍ଗୁ ନଥିଲା। କିନ୍ତୁ ଏଣେ ବେମାର ଭଲ ହେଉ ନଥାଏ, ତେଣେ ବୋଉ ବାରମ୍ବାର ଏକା ପରାମର୍ଶ ଦେଉଥାନ୍ତି। ଫଳରେ ସେ ଗୋଦାନ ପାଇଁ ରାଜି ହେଲା।

ଜଣେ ଗରିବ ବ୍ରାହ୍ମଣ ଆସି ନୂଆ କରି ସେ ଗାଁରେ ରହୁଥାନ୍ତି। ଲୋକେ କହୁଥାନ୍ତି, ସେ ଜଣେ ଅତ୍ୟନ୍ତ ସାଧୁ ପ୍ରକୃତିର ବ୍ରାହ୍ମଣ। ବୋଉଙ୍କ ପରାମର୍ଶରେ ତାଙ୍କୁ ଡାକି ବାବୁ ଗର୍ଭିଣୀ ଗାଈଟିଏ ଦେଲା। ବ୍ରାହ୍ମଣ ଖୁସି ହୋଇ ଗାଈ ଧରି ଯିବା ବେଳକୁ କିନ୍ତୁ ବାବୁ କହିଲା, "ଗୋଟାଏ କଥା। ଗାଈଟି ଦେଲି, କିନ୍ତୁ ବାଛୁରୀଟି ମୋତେ ଦେଇଦେବ।"

ବ୍ରାହ୍ମଣ ଇତସ୍ତତଃ କରି କହିଲେ, "ବାବୁ? ମାଠୁଁ ବାଛୁରୀକୁ ଅଲଗା କରିବା ତ ପାପ!"

"କିଏ ଯେ କଥା କହିଲା? କେଉଁ ଶାସ୍ତ୍ରରେ ତାହା ଲେଖା ଅଛି?" ବାବୁ ଜେରା କଲା। ବିଚରା ବ୍ରାହ୍ମଣ ଏ ପ୍ରଶ୍ନର ଉତ୍ତର ସହଜରେ ଦେଇପାରିଲେ ନାହିଁ। ସେ କହିଲେ, "ବାବୁ! ମା'କୁ ଛାଡ଼ି ବାଛୁରୀ ରହିବ କିପରି! ସେ ଆହାର ପାଇବ କିପରି? ଦୁଧବିନା ସେ ବଞ୍ଚିବ କିପରି?"

"ତମେ ଯାହା କହୁଛ, ତାହା ମଣିଷ ଜାତି ପ୍ରତି ପ୍ରଯୁଜ୍ୟ । ପଶୁ କ'ଣ ବୁଝେ ? ବେଶ୍ । ବାଛୁରି ଯେତେବେଳେ ଦୁଧପିଆ ଛାଡ଼ ଦେବ, ସେତେବେଳେ ତାକୁ ମୋତେ ଦେଇଦେବ ।" ବୀରୁ କହିଲା ।

ବ୍ରାହ୍ମଣ ରାଜି ହେଲେ ।

ଆଶ୍ଚର୍ଯ୍ୟର କଥା, ବୀରୁର ବେମାର ଛାଡିଗଲା । ସେ ପୁରାପୁରି ସୁସ୍ଥ ହୋଇଗଲା ।

କେଇଦିନ ପରେ ବ୍ରାହ୍ମଣ ଘରେ ବାଛୁରି ଜନ୍ମ ହେବା ସମ୍ବାଦ ଆସି ବୀରୁ କାନରେ ପଡ଼ିଲା । ସେ ଯାଇ ଦେଖି ଆସିଲା । ବ୍ରାହ୍ମଣ ବାସ୍ତବିକ ଗାଈକୁ ଅତି ଭଲରେ ରଖିଥିଲେ ।



ବୀରୁର ମନ ଛଟପଟ କରୁଥାଏ । କିଛିଦିନ ପରେ ସେ ଦିନେ ବ୍ରାହ୍ମଣଙ୍କୁ ପଚାରିଲା, "ଗାଈ ଦୁଧ ଠିକ୍ ଠିକ୍ ଦେଉଛି ଟି ?"

ସେ ବ୍ରାହ୍ମଣ ଥିଲେ ଅତ୍ୟନ୍ତ ଭଦ୍ରଲୋକ । ଗାଈ ଦୁଇସେର ଦୁଧ ଦେଉଥିଲା । କିନ୍ତୁ ବୀରୁକୁ ଖୁସି କରିବା ନିମନ୍ତେ ସେ କହି ପକାଇଲେ, "ବାବୁ, ସିଏ ତ ଗାଈ ନୁହେଁ, ଦେବୀ । ଚୃରିସେର ହରିକ ଦୁଧ ଦେଉଛି !"

ବୀରୁ ଖୁସି ହେବ କ'ଣ, ତା' ମୁହଁ ଶୁଖିଗଲା । ତା' ନିଜର କୌଣସି ଗାଈ ଏତେ ଦୁଧ ଦିଅନ୍ତି ନାହିଁ । ଯେଉଁ ଗୋଟିକୁ ସେ ଦେଇଦେଲା, ସେଇ ଗୋଟିକ ଏତେ ବେଶି ଦୁଧ ଦେଉଛି !

ସେ କହିଲା, "ଏତେ ଗୁଡ଼ାଏ ଦୁଧ ଦେଉଛି ? ତା'ହେଲେ ତ ସେ ଦୁଧ ବିଶେଷ ସ୍ୱାଦୁ ହେଉ ନଥିବ !"

"ବାବୁ ! ତା' ସୁଆଦ ଅମୃତ ଭଳି ।" ବ୍ରାହ୍ମଣ ପୁଣି ବୀରୁକୁ ସନ୍ତୋଷ ଦେବା ଉଦ୍ଦେଶ୍ୟରେ କହିଲେ ।

ବୀରୁର ମନ ଆହୁରି ଖରାପ ହୋଇଗଲା । ସେ କହିଲା, "ସତେ ? ଟିକିଏ ଚଖାଇଲ ।"

ବ୍ରାହ୍ମଣ ଯାଇ ସଙ୍ଗେ ସଙ୍ଗେ ଗିଲାସେ ଆଉଟା ଦୁଧ ନେଇ ଆସିଲେ । ବୀରୁ ପିଇ ଦେଖିଲା, ବାସ୍ତବିକ ତାହା ଅତ୍ୟନ୍ତ ସୁସ୍ୱାଦୁ ।

ତା' ମନରେ ଆଉ ସୁଖ ରହିଲା ନାହିଁ । ଉପର ଓଳି ସେ ବ୍ରାହ୍ମଣଙ୍କୁ ଡକାଇ କହିଲା,



"କଥା କ'ଣ କି, ମୋତେ ଗୋଟାଏ ଅଜଣା ରୋଗ ଧରିଛି । ତୁମେ ଦେଇଥିବା ଦୁଧ ପିଇ ବହୁତ ଭଲ ଲାଗିଲା । ତମେ ତ ଗୃରିସେର ଦୁଧ ପାଉଛ । ମୋତେ ଦୈନିକ ଦୁଇସେର କରି ଦିଅ ।"

ବ୍ରାହ୍ମଣ ମୁଣ୍ଡରେ ଚଡ଼କ ପଡ଼ିଲା । ସେ ମୋଟରୁ ଦୁଇସେର ପାଉଥିଲେ । ସେଥିରୁ ପୁଣି ସେ ସେରେ ଲେଖାଏଁ ଦୁଧ ଗାଁ ମନ୍ଦିରର ବୁଢ଼ା ପୂଜାରୀଙ୍କୁ ଦେବେ ବୋଲି ଠିକ୍ କରିଥିଲେ । ବର୍ତ୍ତମାନ ତାହା ହୋଇପାରିବ ନାହିଁ । ଖାଲି ଗାଈ ବାଛୁରୀ ପାଳିବା ହେବ ସାର ।

କିନ୍ତୁ ସେ ନିଜେ ଅତିରଞ୍ଜନ କରି କଥା କହିଥିବାରୁ ଏପରି ହେଲା, ଅର୍ଥାତ୍ ସେ ନିଜ କୃତକର୍ମର ପ୍ରାୟଶ୍ଚିତ୍ତ କରୁଛନ୍ତି ଭାବି ସେଥିରେ ରାଜି ହେଲେ ଓ ଦୁଇସେର ଲେଖାଏଁ ଦୁଧ ପଠାଇଲେ ।

ବ୍ରାହ୍ମଣଙ୍କୁ ଦେଖିଲେ ବାଛୁ ରୋଗ ହୋଇଥିବାର ଛଳନା କରେ । ପନ୍ଦର ଦିନ ଗଲା । ତା' ବୋଉ ତୀର୍ଥ ଯାଇଥିଲେ । ସେ ଫେରି ଆସି ପୁଅକୁ ଦେଖି ଚମକି ପଡ଼ିଲେ । ସେ ରୋଗୀପରି ଦେଖାଯାଉଥିଲା । ସତକୁ ସତ ବାଛୁର ପୁଚ୍ଛଣା ରୋଗ ପୁଣି ତାକୁ ଆକ୍ରମଣ କରିଥାଏ ।

ବୋଉ ବର୍ତ୍ତମାନ ଘୋର ଚିନ୍ତାରେ ପଡ଼ିଲେ । ସେ ପୁଅର ସ୍ୱଭାବ ଜାଣିଥିଲେ । ତା'ର ରୋଗ କ୍ରମେ ବଢ଼ିବା ସତ୍ତ୍ୱେ ସେ ଚିକିତ୍ସାରେ କିଛି ପଇସା ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନଥାଏ ।

ଦିନେ ସେ ଗାଁକୁ ଜଣେ ସାଧୁ ଆସିଥାନ୍ତି । ଜଣେ ସଚ୍ଚା ଯୋଗୀ ଭାବରେ ତାଙ୍କର ଖ୍ୟାତି ଥାଏ । ବୋଉ ତାଙ୍କୁ ଘରକୁ ଆଣିଲେ । ସେ ଢରେ ପଶୁଁ ପଶୁଁ କହିଲେ, "ତୁ ମୋତେ ଏ ପାପର ବାତାବରଣକୁ କାହିଁକି ଆଣିଲୁ ?"

ବୋଉ ଏଥିରେ ଦବି ନଯାଇ ସାଧୁଙ୍କୁ ସବୁ କହିଲେ ଓ ପୁଅକୁ ଦେଖାଇଲେ । ସାଧୁ କହିଲେ, "ଏ ଟୋକା ପାପୀ । ଗୋଦାନ ପୁଣ୍ୟରେ ନିଜେ ସୁସ୍ଥ ହେଲା । ତଥାପି ସେଥିରୁ କିଛି ଶିଖିଲା ନାହିଁ ।"

ବୀରୁ କହିଲା, "ସାଧୁଜୀ! ମୁଁ ପାପୀ ହେଲି କିପରି? ମୁଁ ତ ଗାଈ ଦେଇ ଦେଇଛି!"

"ହଁ। କିନ୍ତୁ ଦୁଧତକ ଫେରିକରି ଆଣୁଛୁ। ଫେରସ୍ତ ପାପ ନୁହେଁ? ସବୁଦିନେ ବିଚରା ବ୍ରାହ୍ମଣ ଦୀର୍ଘଶ୍ୱାସ ଛାଡ଼ି ତୋତେ ଦୁଧ ଯୋଗାଉଛି। ସେଥିରୁ ବଞ୍ଚିତ ବୁଢ଼ା ସୁକାଶୀର ଦୀର୍ଘଶ୍ୱାସ ତୋ ଉପରେ ପଡ଼ୁଛି। ତୁ ରୋଗର ଛଳନା କଲୁ। ଯିଏ ରୋଗର ଛଳନା କରେ, ତା' ପାଖକୁ ରୋଗ ଆନନ୍ଦରେ ଡ଼ିଆଁ ମାରି ଆସିଯାଏ। ଅତଏବ ତୋତେ ସତ ସତ ରୋଗ ହେଲା।" ସାଧୁ କହିଲେ।

"ସାଧୁଜୀ! ବର୍ତ୍ତମାନ ନିରାମୟର ଉପାୟ କ'ଣ?" ବୀରୁ ପଚାରିଲା।

"ପୂର୍ବେ ଯେତିକି ପୁଣ୍ୟାତ୍ମା ବ୍ରାହ୍ମଣଙ୍କୁ ଗୋଦାନ କରିଥିଲୁ, ବର୍ତ୍ତମାନ ତାହାଠୁଁ ଅଧିକ ପୁଣ୍ୟାତ୍ମା ବ୍ରାହ୍ମଣଙ୍କୁ ପୁଣି ଗୋଦାନ କର।" ସାଧୁ କହିଲେ।

"ଆଜ୍ଞା, ସେପରି ପୁଣ୍ୟାତ୍ମା କାହିଁ ପାଇବି?" ବୀରୁ ପଚାରିଲା।

"ସେହି ଏକା ବ୍ରାହ୍ମଣ ଏହା ମଧ୍ୟରେ ଅଧିକ ପୁଣ୍ୟାତ୍ମା ହୋଇସାରିଲେଣି। ସବୁଦିନେ ସେ ନିଷ୍କାମ ଭାବରେ ଗାଈ ବାଛୁରି ପାଳୁଛନ୍ତି ଓ ତୋତେ ଦୁଧ ଯୋଗାଇ ଦେଉଛନ୍ତି। ଅତଏବ ଗୋସେବା ପୁଣ୍ୟ ସାଙ୍ଗକୁ ଦାନର ପୁଣ୍ୟ ସେ ଲଭ କରୁଛନ୍ତି। ତାଙ୍କୁହିଁ ପୁଣି ଗୋଦାନ କର। ନହେଲେ ମର।"

ଏହା କହି ସାଧୁ ଚାଲିଗଲେ। ତାଙ୍କ ରୋକ୍‌ଠୋକ୍ କଥା ବୀରୁର ମନକୁ ଦୋହଲାଇ ଦେଲା। ସେ ବ୍ରାହ୍ମଣଙ୍କୁ ଡକାଇ କ୍ଷମା ମାଗିଲା ଓ ପୁଣି ଗୋଟିଏ ଗାଈ ଦାନ ଦେଲା। ସତକୁ ସତ ଏହାପରେ ସେ ମାନସିକ ଶାନ୍ତି ପାଇଲା ଓ ସୁସ୍ଥ ହେଲା। କ୍ରମେ ତା' ବ୍ୟବହାର ମଧ୍ୟ ବଦଳିବାକୁ ଲାଗିଲା। ସେ କୃପଣ ଭାବ ଛାଡ଼ି ଉଦାର ହେବାକୁ ଶିଖିଲା।






# ଗାଁ କନିଆ !

ଜମ୍ବୁସାଗରର ରାଜା ରତ୍ନଦେବଙ୍କର ଘୋଡ଼ା ପାଳିବା ଦିଗରେ ଭାରି ସଉକ୍ ଥିଲା । ତାଙ୍କ ଘୋଡ଼ାଶାଳରେ ବହୁତ ବଛ ବଛ ଘୋଡ଼ାମାନ ରହିଥାନ୍ତି । ଘୋଡ଼ାର ମୂଲ୍ୟ ବୁଝୁଥିବା ଯେ କୌଣସି ଲୋକ ପାଇଁ ତାଙ୍କ ଘୋଡ଼ାଶାଳ ଗୋଟାଏ ଦେଖିବା ଭଳି ପ୍ରତିଷ୍ଠାନ ଥିଲା ।

ଆଖପାଖର ରାଜାମାନେ ତାଙ୍କର ଅତିଥି ହୋଇ ଆସିଲେ ସେ ସେମାନଙ୍କୁ ଅତି ଗର୍ବର ସହିତ ନିଜ ଘୋଡ଼ାଶାଳ ଦେଖାଉଥିଲେ । ସମସ୍ତେ ରାଜାଙ୍କ ରୁଚିକୁ ପ୍ରଶଂସା କରି ପଦେ ପଦେ କହୁଥିଲେ । ରାଜା ରତ୍ନଦେବ ସେଥିରେ ବହୁତ ଖୁସି ହେଉଥିଲେ ।

ଭଲ ଘୋଡ଼ା ପୋଷିବା ସଙ୍ଗେ ସଙ୍ଗେ ସେ ଉତ୍ତମ ଘୋଡ଼ସବାର୍ ଓ ଘୋଡ଼ା ସହିସ-ମାନଙ୍କର ବି ପୃଷ୍ଠପୋଷକତା କରୁଥିଲେ । ସେ ଆଖପାଖର ରାଜାମାନଙ୍କୁ ଗୁପ୍ତଚର ପଠାଇ ଭଲ ଘୋଡ଼ସବାର ମାନଙ୍କ ବିଷୟରେ ଖବର ନେଉଥିଲେ । ସେମାନଙ୍କୁ ଗୋପନରେ ଅଧିକ ଦରମାର ପ୍ରସ୍ତାବ ଦେଇ ନିଜ ରାଜଧାନୀକୁ ଭଗାଇ ନେଇ ଆସୁଥିଲେ । ସେମାନଙ୍କୁ ସେ ବହୁତ ଭଲ ସୁବିଧା ସୁଯୋଗ ଦେଉଥିଲେ । ନିଜ ରାଜ୍ୟର ଘୋଡ଼ସବାର୍ ମାନଙ୍କ ଉପରେ ତାଙ୍କର ବିଶେଷ ଆସ୍ଥା ନଥିଲା ।

ଦିନେ ଜଣେ ଗୁପ୍ତଚର ଆସି ରାଜାଙ୍କୁ କହିଲା, "ମହାରାଜ ! ମୁଁ ଅଳ୍ପ ସମୟ ଆଗରୁ ବୈଶାଳୀ ଅଭିମୁଖେ ଯାଉଥିବା ଜଣେ ଘୋଡ଼ସବାରକୁ ଭେଟିଲି । ସେ ଦୁଇଦିନ ଦୁଇରାତି ଅବିଶ୍ରାନ୍ତ ଘୋଡ଼ା ଛୁଟାଇ ପାରେ । ସେ ବୈଶାଳୀର ରାଜଧାନୀ ଯିବା ବାଟରେ ବିଷ୍ଣୁପୁରରେ ସପ୍ତାହେ ରହିବ । ତା'ର ଜଣେ ବନ୍ଧୁର ଝିଅ ବାହାଘର ।"

"ଦେବପ୍ରିୟ"

ରାଜା ଖୁସି ହୋଇଗଲେ ଓ କହିଲେ, "ବାଃ, ଏହାକୁହିଁ କହନ୍ତି ଘୋଡ଼ସବାର୍ ! ଦୁଇଦିନ ଦୁଇରାତି ଅବିଶ୍ରାନ୍ତ ଘୋଡ଼ା ଛୁଟାଇବା କମ୍ କଥା ନୁହେଁ ।" ସେ ତା'ପରେ ତାଙ୍କ ମନ୍ତ୍ରୀଙ୍କୁ ଡାକି ଶୀଘ୍ର ବୈଶାଳୀ ରାଜ୍ୟର ବସ୍ତୁପୁରକୁ ଜଣେ ଲୋକ ପଠାଇ ସେ ଘୋଡ଼ସବାରକୁ ନେଇ ଆସିବାକୁ ନିର୍ଦ୍ଦେଶ ଦେଲେ ।

ମନ୍ତ୍ରୀ କ'ଣ କହିବେ ବୋଲି ଜଣା ପଡୁଥିଲା । କିନ୍ତୁ କିଛି ଶୁଣିବା ପାଇଁ ରାଜାଙ୍କ ଧୈର୍ଯ୍ୟ ନଥିଲା । ସେ ହାତ ହଲାଇ ମନ୍ତ୍ରୀଙ୍କୁ କହିଲେ, "ସମୟ ନଷ୍ଟ କର ନାହିଁ । ଯାହା କହିଲି କର । ସେ ଘୋଡ଼ସବାର ପାଖକୁ ପ୍ରସ୍ତାବ ପଠାଅ, ସେ ଆମଠିଁ ରହିଲେ ମାସକୁ ଏକଶତ ସ୍ୱର୍ଣ୍ଣମୁଦ୍ରା ଦରମା ପାଇବ ।"

"ମହାରାଜ ! ମୁଁ କହୁଥିଲି କି ଦୁଇଦିନ ଏବଂ ଦୁଇରାତି ଘୋଡ଼ା ଛୁଟାଇବା ଖୁବ୍ ବାହାଦୁରିର କାମ ହୋଇପାରେ, କିନ୍ତୁ ଆମ ରାଜ୍ୟରେ..."

ମନ୍ତ୍ରୀଙ୍କ କଥା ପୂରା ହେବା ପୂର୍ବରୁ ରାଜା ନିଜକୁ ନିଜେ କହିଲା ଭଳି କହିଲେ, "ଦୁଇଦିନ ଦୁଇରାତି ! ବାପ୍‌ରେ ! ସେ ଓସ୍ତାଦ୍ ଘୋଡ଼ସବାରକୁ ମୁଁ ଜରୁର୍ ଆଣିବି ! ମନ୍ତ୍ରୀ ଶୀଘ୍ର ଯାଅ ।"

ମନ୍ତ୍ରୀ କିଛି ନ କହି ସେ ଦିଗରେ ଆବଶ୍ୟକୀୟ ବ୍ୟବସ୍ଥା କରିବା ନିମନ୍ତେ ଚାଲିଗଲେ ।

ଏହାର ସପ୍ତମ ଦିନରେ ବସ୍ତୁପୁରରେ ଥିବା ସେ ଘୋଡ଼ସବାର୍ ଆସି ପହଞ୍ଚିଲା । ସେ



ରାଜା ରତ୍ନଦେବଙ୍କ ପ୍ରସ୍ତାବ ସାଦରେ ଗ୍ରହଣ କରି ନେଇଥିଲା । ରତ୍ନଦେବ ଯେତେବେଳେ ଶୁଣିଲେ କି ବୈଶାଳୀର ରାଜା ମଧ୍ୟ ସେ ଲୋକକୁ ଚାକିରି ଦେବାପାଇଁ ଚାହୁଁଥିଲେ କିନ୍ତୁ ବୈଶାଳୀ ରାଜାଙ୍କ ଦୂତ ତାକୁ ଭେଟିବା ଆଗରୁ ତାଙ୍କ ଦୂତ ଭେଟି ବ୍ୟବସ୍ଥା ପକ୍କା କରି ସାରିଥିଲା, ସେତେବେଳେ ସେ ଆହୁରି ଖୁସି ହେଲେ ।

"ମନ୍ତ୍ରୀ, ଆମର ଯେଉଁ ଲୋକଟି ତୁରନ୍ତ ଯାଇ ଏ କାର୍ଯ୍ୟଟି ସମ୍ପାଦନ କରି ଆସିଲା, ତାକୁ ପୁରସ୍କାର ଦେବା ।" ଦୁଇ ତିନିଦିନ ପରେ ରାଜା ରତ୍ନଦେବ କହିଲେ ।

"ମହାରାଜ! ତାକୁ ମୁଁ ବର୍ତ୍ତମାନ ଆଉ କାହିଁ ପାଇବି?" ମନ୍ତ୍ରୀ କହିଲେ ।

"ତୁମେ କ'ଣ କହୁଛ ବୁଝି ପାରୁନାହିଁ ।" ରାଜା କହିଲେ ।

"ମହାରାଜ! ସେ ଆଉ ଆସିଲା ନାହିଁ । ଯଥାଶୀଘ୍ର ବସ୍ତୁପୁର ପହଞ୍ଚିବା ଉଦ୍ଦେଶ୍ୟରେ ସେ ଏକାଦିକ୍ରମେ ତିନିଦିନ ତିନିରାତି ଘୋଡ଼ା ଛୁଟାଇଲା । କେଉଁଠି ଅଟକିଥିଲେ ସେ ଏତେ ଶୀଘ୍ର ପହଞ୍ଚିପାରି ନଥାନ୍ତା । ତା'ର ଏ ଅପୂର୍ବ କୃତିତ୍ୱରେ ପ୍ରୀତ ହୋଇ ବୈଶାଳୀର ରାଜା ତାକୁ ବହୁତ ଅଧିକ ଦରମା ଦେଇ ନିଜ ପାଖରେ ରଖିନେଲେ ବୋଲି ସେ ଖବର ପଠାଇଛି ।" ମନ୍ତ୍ରୀ ମୁହଁ ଶୁଖାଇ କହିଲେ ।

"କ'ଣ ହେଲା? ସେ ଏକାଥରକେ ତିନିରାତି ତିନିଦିନ ଧରି ଘୋଡ଼ା ଛୁଟାଇଥିଲା? ଏପରି ଗୁଣୀ ଘୋଡ଼ସବାର ମୋ ରାଜ୍ୟରେ ଥିଲେ? ମନ୍ତ୍ରୀ! ଏକଥା ତ ମୁଁ ଜାଣି ନଥିଲି!" ରାଜା କହିଲେ ।

"ମହାରାଜ! ମୁଁ ଆପଣଙ୍କୁ କହିବାକୁ ଚେଷ୍ଟା କରୁଛି । କିନ୍ତୁ ଆପଣ ଶୁଣିବା ଭଳି ଧୈର୍ଯ୍ୟ ଦେଖାଇ ନାହାନ୍ତି ।" ମନ୍ତ୍ରୀ କହିଲେ ।

ରାଜା ସ୍ତବ୍ଧ ହୋଇ କିଛି ସମୟ ରହିଲେ । ସେ ଏ ପର୍ଯ୍ୟନ୍ତ ଏକଥା ଜାଣି ନଥିଲେ ଯେ ତାଙ୍କ ନିଜ ରାଜ୍ୟରେ ଅନ୍ୟ ରାଜ୍ୟଠୁଁ ଅଧିକ ଗୁଣବାନ୍ ଲୋକେ ଅଛନ୍ତି!






[୭]

[ଚନ୍ଦ୍ରସେନ ରାକ୍ଷସ-ରାଜ ଉଗ୍ରାକ୍ଷର ପ୍ରାସାଦରେ ଗୋଟିଏ ରାତ କଟାଇ ଓ ଅଗ୍ନିଦ୍ୱୀପର ପକ୍ଷୀ ଆରୂଢ଼ ଆଗନ୍ତୁକମାନଙ୍କୁ ଦେଖି ପରଦିନ ନିଜ ନଗରକୁ ଫେରୁଛନ୍ତି, ଉଗ୍ରାକ୍ଷର ଅନୁଚରମାନେ ଆସି ତାକୁ ପୁଣି ଡାକି ନେଇଗଲେ । ସେ ଯାଇ ଦେଖିଲା, ଶତ୍ରୁମାନଙ୍କ ସଙ୍ଗ ଆସିଥିବା ଅମରପାଳ ନାମକ ଗୋଟିଏ ଲୋକ ରହିଯାଇଛି । ତା'ଠୁଁ ସେମାନେ ଅନେକ ଖବର ସଂଗ୍ରହ କଲେ । ତା'ପରେ···]

ଅମରପାଳ ହଠାତ୍ ମୌନ ହୋଇ ଆକାଶ ଆଡ଼େ ଦୃଷ୍ଟିପାତ କରିବାର ଦେଖି ଚନ୍ଦ୍ରସେନ ବିସ୍ମୟ ଅନୁଭବ କଲେ । ଉଗ୍ରାକ୍ଷ ଅମରପାଳର ସେ ହାବଭାବ ଦେଖି ବିରକ୍ତ ହେଲା । ସେ ଆଖି ଲାଲ୍ କରି ନିଜ ଗଦା ଉପରକୁ ଉଠାଇ କହିଲା, "ଆରେ ଦୁଷ୍ଟ ! ତୋ ମୁଣ୍ଡ ବିଗିଡ଼ିଗଲାଣି କି ?

ବେମାରର ଔଷଧ ମୋତେ ଜଣା । ଦେବ ପାନେ, ଦେଖିବୁ ?"

ଉଗ୍ରାକ୍ଷର ସେ କ୍ରୋଧ ଦେଖି ମଧ୍ୟ ଅମରପାଳ ବିଚଳିତ ହେଲା ନାହିଁ । ସେ ଈଷତ୍ ହସି କହିଲା, "ମୋତେ ମାରି ପକାଇବ ତ ? କିନ୍ତୁ ତମ ନିଜ ଅବସ୍ଥା କଥା ଭାବ ଶୁଣ, ସେ ଦେଖିଛ ତ ? ନାଗବର୍ମା ବକ୍ଷଃସ୍ଥରେ ତମେ




ଜାଣିଛ । ସେ କପିଳପୁର ଅଧିକାର କରି ବସିଛି । ତା' ସହିତ ଯୋଗ ଦେଇଛନ୍ତି ଅଗ୍ନିଦ୍ୱୀପର ଲୋକେ ଓ ସେମାନଙ୍କ ବଶରେ ଥିବା ସେ ଭୟଙ୍କର ପକ୍ଷୀମାନେ । ତମେ ସେମାନଙ୍କ ପ୍ରତାପ ନିଶ୍ଚିତ ଅଙ୍ଗେ ନିଭେଇଛ !"

ଉଗ୍ରାକ୍ଷ ବୁଝି ପାରିଲା ଯେ ପକ୍ଷୀ ତା' ଦେହରେ ଯେଉଁ କ୍ଷତ ସୃଷ୍ଟି କରିଛି, ଅମରପାଳ ତାହାରି ପ୍ରତି କଟାକ୍ଷ କରୁଛି । ସେ ଆହୁରି ରାଗିଗଲା ଓ ବିକଟ ଭଙ୍ଗୀରେ ଅମରପାଳ ଆଡ଼େ ଗଦା ଉଠାଇ ଝପଟି ଗଲା । କିନ୍ତୁ ଚନ୍ଦ୍ରସେନ ଦୁଇଜଣଙ୍କ ମଝିକୁ ଡେଇଁ ପଡ଼ି ଉଗ୍ରାକ୍ଷକୁ ଆଦେଶ ଦେବା କଣ୍ଠରେ କହିଲେ, "ଉଗ୍ରାକ୍ଷ ! ଶାନ୍ତ ହୁଅ ।"

"ଏ ତୁଚ୍ଛ ମଣିଷ ପୁଣି ମୋଭଳି ରାକ୍ଷସ-ରାଜଙ୍କୁ ଉପହାସ କରୁଛି !" ଉଗ୍ରାକ୍ଷ ଦାନ୍ତ କଡ଼ମଡ଼ କରି କହିଲା ।

"ମଣିଷଙ୍କ ପ୍ରତି ତମେ ଏପରି ହେୟ ଭାବ ରଖ ନାହିଁ ଉଗ୍ରାକ୍ଷ ! ମୋର ବିଶ୍ୱାସ ଏ ଲୋକଠୁଁ ଆମକୁ ସାହାଯ୍ୟହିଁ ମିଳିବ । ଯଦି ତାହା ନ ହୁଏ, ସେତେବେଳକୁ ବରଂ ତମେ ଏହା ସହ ତମ ମନଇଚ୍ଛା ଆଚରଣ କରିବ ।" ଚନ୍ଦ୍ରସେନ କହିଲେ ।

ଅମରପାଳ ଚନ୍ଦ୍ରସେନଙ୍କୁ ଅନାଇ କହିଲା, "ମହାଶୟ, ଆପଣ ରାକ୍ଷସକୁ ମୋ ସହ ମନଇଚ୍ଛା ଆଚରଣ କରିବାକୁ ଛାଡ଼ ଦେବେ, ଏହା କ'ଣ ଉଚିତ ହେବ ? ଆପଣ ମୋ ପ୍ରାଣ ପାଇଁ ଦାୟୀ । ଆପଣ କଥା ଦେବାରୁ ମୁଁ ଗଛରୁ ଓହ୍ଲାଇଲି ।"

ଚନ୍ଦ୍ରସେନ ଦୃଢ଼ କଣ୍ଠରେ କହିଲେ, "ଭୁଲିଯାଅ ନା ଯେ ତମେ ଆମର ଶତ୍ରୁ ରୂପେ ଏଠାକୁ ଆସିଥିଲ । ତମେ ଆମ ସହ ସହଯୋଗ କଲେ ସିନା ଆମେ ତମର ପ୍ରାଣ ପାଇଁ ଦାୟୀ ରହିବୁଁ ! ତମେ ଏଭଳି ଶୂନ୍ୟକୁ ଚାହିଁ ରହିଲେ କ'ଣ ହେବ ?"

"ମହାରାଜ ! ମୋତେ କ୍ଷମା କରନ୍ତୁ । ମୁଁ ବାସ୍ତବିକ ଆପଣଙ୍କର ହିତ କରିବାକୁ ଚାହେଁ । ରାଜଦ୍ରୋହୀ ନାଗବର୍ମା ପ୍ରତି ମୋ ମନରେ ତିଳେ ମଧ୍ୟ ଶ୍ରଦ୍ଧା ଭାବ ନାହିଁ । ତେବେ ମୁଁ ତାକୁ ଭୟ କରେଁ । ତେଣୁ ତା' ଦଳରେ




ସାମିଲ୍ ହୋଇଥିଲ ।" ଅମରପାଳ ଏକା ନିଃଶ୍ୱାସରେ କହିଗଲା ।

"ବେଶ୍, ଭଲ କଥା । ତେବେ ତମେ ଆମ ପ୍ରଶ୍ନର ଉତ୍ତର ସଠିକ୍ ଭାବରେ ଦିଅ । ଧବଳଗିରି ଉପରେ ନାଗବର୍ମା ଚଢ଼ଉ କରିଛି ପରା? ଆଚ୍ଛା, ତା' ସହ କ'ଣ ଅଗ୍ନିଦ୍ୱୀପର ଲୋକେ ଓ ସେ ଭୀଷଣ ପକ୍ଷୀମାନେ ଅଛନ୍ତି?" ଜୟସେନ ପଚାରିଲେ ।

"ସମ୍ଭବତଃ ଅଛନ୍ତି । ମୁଁ ଠିକ୍ ଠିକ୍ କହିପାରୁ ନାହିଁ । ତେବେ କପିଳପୁରକୁ ଲାଗି ଯେଉଁ ବଣ ଅଛି, ସେଠାରେ ଶହେ ସରିକି ବ୍ୟାଘ୍ରଚର୍ମଧାରୀ ଲୋକ ଆସି ଅଛନ୍ତି । ସେମାନଙ୍କ ବାହନମାନେ ବି ସେମାନଙ୍କ ସହ ଅଛନ୍ତି । ନାଗବର୍ମାର କିଛି ପ୍ରଜା ସେମାନଙ୍କ ପାଖରେ ଦାସ ଭଳି ଖଟୁଛନ୍ତି ।" ଅମରପାଳ କହିଲା ।

"ସେ ଭୟଙ୍କର ପକ୍ଷୀମାନଙ୍କୁ ସଂହାର କରିବାର କ'ଣ କୌଣସି ଉପାୟ ନାହିଁ?" ରାକ୍ଷସ ଉଗ୍ରାକ୍ଷ ପକ୍ଷୀଠୁଁ ପାଇଥିବା ଆଘାତ ଉପରେ ଥରେ ହାତ ବୁଲାଇ ନେଇ ପଚାରିଲା ।

"କାହିଁକି ନାହିଁ? ସେ ପକ୍ଷୀଙ୍କର ନଖ ଓ ଚଞ୍ଚୁ ହିଁ ଭୟଙ୍କର । ଏ ଦୁଇ ଅଙ୍ଗ କବଳରୁ ନିଜକୁ ବଞ୍ଚାଇ ଯଦି କେହି ତା' ଗଳାରେ ତରବାରି ଦ୍ୱାରା ଆଘାତ କରିବେ, ତେବେ ସେ ସହଜରେ ମରିବ । କାରଣ ତା' ଗଳା ଅନ୍ୟ ଯେ କୌଣସି ପକ୍ଷୀର ଗଳା ଭଳି ନରମ ।" ଅମରପାଳ ଉତ୍ତର ଦେଲା ।

"ହାଃ ହାଃ!" ଉଗ୍ରାକ୍ଷ ଉଚ୍ଚ କଣ୍ଠରେ ହସିଲା । ତା'ପରେ କହିଲା, "ଆଚ୍ଛା, ପୁଣି ଥରେ ଯଦି ସେ ଦୁଷ୍ଟ ପକ୍ଷୀ ମୋ ହାବୁଡ଼ରେ କେବେ ପଡ଼େ, ତେବେ ତାକୁ ଭଲଭାବେ ଦେଖି ନେବ ।"

ଉଗ୍ରାକ୍ଷ ଆହୁରି କିଛି କହିବାକୁ ଯାଉଥିଲା, ସେତିକିବେଳେ ଦଳେ ରାକ୍ଷସ ତଥା ସାଧାରଣ ପ୍ରଜା ସେଠାରେ ଦୌଡ଼ି ଦୌଡ଼ି ଆସି ପହଞ୍ଚିଲେ । ସେମାନେ "ମହାନାୟକ!" "ମହାରାଜ!" ବୋଲି ପାଟି କରୁଥାନ୍ତି ।

ସେମାନଙ୍କ ଚିତ୍କାର ଶୁଣି ଜୟସେନ ବୁଝିଲେ ଯେ ପୁଣି କୌଣସି ବିପଦ ଦେଖାଦେଇଛି ।




"ମହାରାଜ! ଆମ୍ଭେମାନେ ବରଗଛମାଳ ଭିତରେ ଆମ ଗୋ ମହିଷ ଚରାଉଥିଲୁଁ । ହଠାତ୍ ସେ ଭୀଷଣ ପକ୍ଷୀ ଉପରେ ସବାର୍ ହୋଇ ସେଠାରେ ପହଞ୍ଚିଗଲେ ବ୍ୟାଘ୍ରଚର୍ମଧାରୀ କେତେକ ଲୋକ । ସେମାନେ ଆମକୁ ଆକ୍ରମଣ କଲେ । ସେମାନେ କେତେଜଣ ମଣିଷ ଓ ପଶୁଙ୍କୁ ଉଠାଇନେଇ ଚାଲିଗଲେ । ଆମେ ପ୍ରାଣ ବିକଳରେ ଖସି ଆସିଲୁଁ ।" ସେମାନଙ୍କ ଭିତରୁ କେତେଜଣ ଦମ୍ ନେଇ କହିଲେ ।

ଉଗ୍ରାକ୍ଷ ଆଗରେ ରାକ୍ଷସ କେତେଜଣ ବି ଏହା ପ୍ରକାର ବିବରଣୀ ପେଶ୍ କଲେ । କଥା ହେଲା, ସେ ରାକ୍ଷସମାନେ ବି ଲୋକାଳୟକୁ କିଛି ପଶୁ ଚୋରି କରିବା ଉଦ୍ଦେଶ୍ୟରେ ଯାଇଥିଲେ । କିନ୍ତୁ ସେମାନେ ସିନା ଲୁଚି ଲୁଚି ଚୋରି କରିଥାନ୍ତେ, ସେମାନଙ୍କ ଆଗରେ ପ୍ରକାଶ୍ୟ ଭାବରେ ପଶୁ ଓ ମଣିଷଙ୍କୁ ନେଇଗଲେ ଶତ୍ରୁ ପକ୍ଷ ।

"ଚନ୍ଦ୍ରସେନ! ଆମେ କ'ଣ ବର୍ତ୍ତମାନ ବରଗଛମାଳ ଆଡ଼େ ଯିବା?" ଉଗ୍ରାକ୍ଷ ନିରୁତ୍ସାହ କଣ୍ଠରେ ପ୍ରଶ୍ନ କଲା ।

"ନିଶ୍ଚୟ! ନିରୀହ ଲୋକଙ୍କ ଉପରେ ଅତ୍ୟାଚାର ହେଉଛି । ଆମେ କ'ଣ ଜାଣି ଶୁଣି ଚୁପ୍ ରହିଯିବା?" ଚନ୍ଦ୍ରସେନ ଉତ୍ତେଜିତ କଣ୍ଠରେ କହିଲେ ।

ଚନ୍ଦ୍ରସେନ ସେଠାରେ ସମସ୍ତ ନିଷ୍ଠା ନିଜର ତତ୍କ୍ଷଣାତ୍ ବରଗଛମାଳ ଆଡ଼କୁ ଚାଲିଲେ । ଉଗ୍ରାକ୍ଷ କହିଲା, "ବେଶ୍, ବେଶ୍ । ଚାଲ । ଆଜି ସେ ଦୁଷ୍ଟଙ୍କୁ ଧରି ଖଣ୍ଡ ଖଣ୍ଡ କରି ଶାଗୁଣାଙ୍କୁ ଖୋଇ ଦେବା ।"

ସେମାନେ କିଛି ବାଟ ଯିବା ପରେ ଅମରପାଳ ଚନ୍ଦ୍ରସେନଙ୍କ ପାଖକୁ ଆସି କହିଲା, "ମହାରାଜ, ଆପଣଙ୍କ ପାଖରେ ଗୋଟିଏ ନିବେଦନ ଅଛି । ଶତ୍ରୁପକ୍ଷ ଏତେବେଳକୁ ସେଠାରୁ ନିଶ୍ଚୟ ଚାଲିଯିବେଣି । ଯଦି ବି ସେମାନେ ସେଠାରେ ଥିବେ, ସେମାନଙ୍କ ଆଗକୁ ଯାଇ ଆମେ କ'ଣ କରିବା? ଯେ ପର୍ଯ୍ୟନ୍ତ ସେ ଭୀଷଣ ପକ୍ଷୀମାନେ ସେମାନଙ୍କ ସହିତ ରହିଛନ୍ତି, ସେ ପର୍ଯ୍ୟନ୍ତ ସେମାନଙ୍କ ଆଗକୁ ଯିବା ଆତ୍ମହତ୍ୟା ଛଡ଼ା ଆଉ କିଛି ନୁହେଁ ।"



ଉଗ୍ରାକ୍ଷ ତା' ସହ ଏକମତ ହୋଇ କହିଲା, "ଚନ୍ଦ୍ରସେନ, ଅମରପାଳ ଯାହା କହୁଛି ତାହା ସତ । ତରତର ହୋଇ କିଛି କରିବା ଠିକ୍ ହେବ ନାହିଁ । ରାତିର ଅଭିଜ୍ଞତା ତମର ମନେ ଅଛି ତ ?"

ଚନ୍ଦ୍ରସେନ ବି ଭାବିଲେ, ବାସ୍ତବିକ ଦୁଃସାହସ କରି ଲାଭ ନାହିଁ । ସେଥିରେ କେତେକ ରାକ୍ଷସ ଓ କେତେକ ମଣିଷ ବଳି ପଡ଼ିବାହିଁ ସାର ହେବ । ଅଗ୍ନିଦ୍ୱୀପର ଆଗନ୍ତୁକମାନଙ୍କ ସହ ବର୍ତ୍ତମାନ ଅବସ୍ଥାରେ ଲଢ଼େଇ କରି ବିଜୟର କୌଣସି ଆଶା ନାହିଁ ବୋଲି ସେ ହୃଦୟଙ୍ଗମ କଲେ । ନିଜ ପ୍ରଜାମାନଙ୍କ ଉପରେ ବିପତ୍ତି ପଡ଼ିବା ବେଳେ ସେ କିଛି କରି ପାରୁ ନାହାନ୍ତି, ଏପାଇଁ ତାଙ୍କର ପ୍ରବଳ ଗ୍ଳାନିବୋଧ ହେଲା । ତା' ଛଡ଼ା, ଏଭଳି ଅବସ୍ଥାରେ କେତେଦିନ ପର୍ଯ୍ୟନ୍ତ ରାଜୁତି କରିପାରିବେ ? ନାଗବର୍ମା ତାଙ୍କ ପିତାଙ୍କ ରାଜ୍ୟ ଧବଳଗିରି ଆକ୍ରମଣ କଲଣି । ଯଦି ସେ ଧବଳଗିରି ଅଧିକାର କରିନିଏ, ତେବେ କ'ଣ ତାଙ୍କ ରାଜ୍ୟକୁ ଛାଡ଼ିଦେବ ?

ଏହିଭଳି ସଂଶୟ ଓ ଭୟରେ ସେ ପୀଡ଼ିତ ହେଉଛନ୍ତି, ସେତିକିବେଳେ ଅମରପାଳ କହିଲା, "ମହାରାଜ, ମୁଁ ଆପଣଙ୍କ ବିଶ୍ୱସ୍ତ ସେବକ । ଆପଣ ନିର୍ଦ୍ଦେଶ ଦେଲେ ମୁଁ ଅଗ୍ନିକୁଣ୍ଡକୁ ମଧ୍ୟ ଡେଇଁ ପଡ଼ିବି । ଆପଣ ମୋ ଉପରେ ବିଶ୍ୱାସ ରଖନ୍ତୁ ଓ ମୋ ପରାମର୍ଶ ଶୁଣନ୍ତୁ । କପିଳପୁର ନିକଟବର୍ତ୍ତୀ ବଣରେ ରହୁଥିବା ସେ ଭୟଙ୍କର ପକ୍ଷୀମାନଙ୍କୁହିଁ ଆମେ ପ୍ରଥମେ କୌଣସି ନା କୌଣସି ଉପାୟରେ ବିନାଶ କରିବା ଉଚିତ । ତେଣିକି ଏ ବ୍ୟାଘ୍ର-ଚର୍ମଧାରୀଙ୍କୁ ଦମନ କରିବା କାଠିକର ହେବ ନାହିଁ ।"

"ଅମରପାଳ, ତମେ କହୁଥିଲ କି ସେଠାରେ ପ୍ରାୟ ଶହେ ସରିକି ଭୟଙ୍କର ପକ୍ଷୀ ଅଛନ୍ତି । ତେବେ ସେମାନଙ୍କୁ ଆମେ ସଂହାର କରିବା କିପରି ?" ଚନ୍ଦ୍ରସେନ ପଚାରିଲେ ।

"ହଁ, ହଁ, ଅମରପାଳ, ଶୀଘ୍ର ଶୀଘ୍ର କୁହ । କିପରି ଉପାୟରେ ଆମେ ସେ ପକ୍ଷୀମାନଙ୍କ ଧ୍ୱଂସ ସାଧନ କରିବା ?" ରାକ୍ଷସ ଉଗ୍ରାକ୍ଷ ଆଗ୍ରହ ଭରେ ପଚାରିଲା ।




ଅମରପାଳ ରାକ୍ଷସଙ୍କୁ ଉପେକ୍ଷା କଲାଭଳି ଦୃଷ୍ଟିରେ ଥରେ ଅନାଇ ନେଇ ଚନ୍ଦ୍ରସେନଙ୍କୁ ପଚାରିଲା, "ମହାରାଜ, ଆପଣଙ୍କୁ ପ୍ରଥମରୁ କହୁଛି, ଯେ ପକ୍ଷୀମାନେ ଜଙ୍ଗଲ ଭିତରେ ଅଟକ ହୋଇ ରହିଛନ୍ତି। ସେମାନଙ୍କୁ ବଡ଼ ବଡ଼ ଛାଉଣୀ ଭିତରେ ରଖାଯାଇଛି। ସେମାନଙ୍କ ଗୋଡ଼ରେ ଜଂଜିର ବାନ୍ଧି ଦିଆଯାଇଛି ଓ ଯେ ଜଂଜିରର ଅନ୍ୟ ପ୍ରାନ୍ତ ଲୌହ ସ୍ତମ୍ଭ ଦେହରେ ବନ୍ଧା ହୋଇଛି। ପାଖରେ ଅନ୍ୟ ଗୁଡ଼ାଏ କୁଡ଼ିଆରେ ସେମାନଙ୍କ ଉପରେ ସବାର୍ ହେଉଥିବା ଲୋକେ ରହୁଛନ୍ତି। ମହାରାଜ, ସେ ପକ୍ଷୀମାନେ ଯେତେବେଳେ ଯେମିତି ବନ୍ଧା ଅବସ୍ଥାରେ ଥିବେ, ସେତିକିବେଳେ ସେମାନଙ୍କୁ ସଂହାର କରିବା ସହଜ ହେବ।"

"ଠିକ୍। କିନ୍ତୁ ସଂହାର କି ଉପାୟରେ କରାହେବ? ଅସ୍ତ୍ର ଦ୍ୱାରା ଗୋଟିଏ ଗୋଟିଏ ପକ୍ଷୀକୁ ମାରିବାକୁ ହେବ?" ଚନ୍ଦ୍ରସେନ ପଚାରିଲେ।

"ମହାରାଜ, ସେ ବିଷୟରେ ମୁଁ ଗୋଟିଏ ଉପାୟ ପାଇଛି।"

ଅମରପାଳ ତା' ପ୍ରସ୍ତାବ ଦେଇ ସାରିବା ପୂର୍ବରୁ ସାମ୍ନା ଗଛ ଉହାଡ଼ରୁ କୋଳାହଳ ଶୁଭିଲା। ଉଗ୍ରାକ୍ଷ, ଚନ୍ଦ୍ରସେନ ଓ ସେଠାରେ ଉପସ୍ଥିତ ସମସ୍ତେ କୋଳାହଳ ଆସୁଥିବା ଦିଗକୁ ଦୃଷ୍ଟିପାତ କଲେ। ସେମାନେ ଧୀରେ ଧୀରେ ସେ ଆଡ଼େ ଅଗ୍ରସର ହେଲେ ଓ ଗଛଲତା ଉହାଡ଼ରୁ ସେଆଡ଼େ ଦୃଷ୍ଟିପାତ କରି ଯେଉଁ ଦୃଶ୍ୟ ଦେଖିଲେ, ତାହା ଅତ୍ୟନ୍ତ ବିଭତ୍ସ।

କେତେକ ଭୟଙ୍କର ପକ୍ଷୀ କିଛି ଗୋରୁ ଓ ମଇଁଷିଙ୍କୁ ଟେକିନେଇ ଉଡ଼ିବାକୁ ଆରମ୍ଭ କରୁଥିଲେ। ସେ ପକ୍ଷୀମାନଙ୍କ ଉପରେ ସବାର ହୋଇଥିବା ବ୍ୟାଘ୍ରଚର୍ମଧାରୀ ଲୋକେ ଚିତ୍କାର କରୁଥିଲେ ଓ ଅନ୍ୟ ମଇଁଷିଙ୍କ ଉପରକୁ ଜାଲ ଫୋପାଡୁଥିଲେ। ପଶୁପାଳକମାନେ ଢେଲା ଫୋପାଡ଼ି ସେ ପକ୍ଷୀମାନଙ୍କୁ ଦୂରେଇ ଦେବାକୁ ଚେଷ୍ଟା କରୁଥିଲେ। ଗୋଟାଏ ପକ୍ଷୀ ସେମାନଙ୍କ ଭିତରୁ ବି ଜଣକୁ ଉଠାଇ ନେଲା।

ସେ ଭୟଙ୍କର ଦୃଶ୍ୟ ଦେଖି ଚନ୍ଦ୍ରସେନ ଥରି ଉଠିଲେ । ଉଗ୍ରାକ୍ଷ ମଧ୍ୟ କ୍ରୋଧ ଜର୍ଜର କଣ୍ଠରେ ଚିତ୍କାର କରିବାକୁ ଯାଉଥିଲା, କିନ୍ତୁ ଚନ୍ଦ୍ରସେନ ତାକୁ ସଙ୍କେତ ଦେଇ ଚୁପ କରିଦେଲେ । ସେ ମୃଦୁ କଣ୍ଠରେ କହିଲେ, "ବର୍ତ୍ତମାନ ଚିତ୍କାର କରି କିଛି ଲାଭ ନାହିଁ । ଯାହା ହେବାର ହୋଇଗଲାଣି । ଏ ଦୁଷ୍ଟମାନେ ଯେତେ ଶୀଘ୍ର ଏଠାରୁ ଯିବେ, ସେତେ ଭଲ ।"

ଚନ୍ଦ୍ରସେନଙ୍କ ନିର୍ଦ୍ଦେଶରେ ସମସ୍ତେ ଚୁପ୍ ରହିଲେ । ରାକ୍ଷସମାନେ ସ୍ତବ୍ଧ ହୋଇ ଚାହିଁ ଥାନ୍ତି । ଚାହୁଁ ଚାହୁଁ ସେ ଭୟଙ୍କର ପକ୍ଷୀମାନେ ଆକାଶକୁ ଉଡ଼ିଗଲେ । ସେମାନେ ଅନେକ ଉଚ୍ଚକୁ ଚାଲିଯିବା ପରେ ଚନ୍ଦ୍ରସେନଙ୍କ ଲୋକେ ଯାଇ ସେଠାରେ ଆହତ ହୋଇ ପଡ଼ିଥିବା ଲୋକଙ୍କ ଶୁଶ୍ରୂଷା କଲେ ।

ଉଗ୍ରାକ୍ଷ ଗୋଟିଏ ଗଛମୂଳରେ ବସି ପଡ଼ି ଚନ୍ଦ୍ରସେନଙ୍କୁ କହିଲା, "ଆଜିଯାଏ ମୁଁ ଭୟ କ'ଣ ଜାଣି ନଥିଲି । ଏ ଦୁଷ୍ଟଙ୍କ କବଳରୁ କିପରି ଭାବରେ ରାଜ୍ୟ ରକ୍ଷା ହେବ ? କୌଣସି ଉପାୟ ଭାବି ପାରୁଛ ?" ଚନ୍ଦ୍ରସେନ ଉଗ୍ରାକ୍ଷର ପ୍ରଶ୍ନର ଉତ୍ତର ନ ଦେଇ ଅମରପାଳ ଆଡ଼େ ଅନାଇ କହିଲେ, "ତମେ ସେତେବେଳେ କ'ଣ କହିବାକୁ ଯାଉଥିଲ, ଆମ ଦୃଷ୍ଟି ଏଆଡ଼େ ଆକୃଷ୍ଟ ହେଲା । କ'ଣ କହୁଥିଲ ?"

"ମହାରାଜ, ଆଗରୁ କହିଛି, ପକ୍ଷୀମାନେ ବନ୍ଦୀଥିବା ବେଳେ ସେମାନଙ୍କୁ ମାରିବାକୁ ହେବ । ମାରିବାର ଏକମାତ୍ର ଉପାୟ, ସେମାନେ ଯେଉଁ ଛାଉଣୀମାନଙ୍କରେ ରହୁଛନ୍ତି, ସେଥିରେ ନିଆଁ ଲଗାଇ ଦେବାକୁ ପଡ଼ିବ ।" ଅମରପାଳ କହିଲା ।

"ବୁଝିଲି । କିନ୍ତୁ ତାହା ସମ୍ଭବ ହେବ କି ?" ଚନ୍ଦ୍ରସେନ ପଚାରିଲେ ।

"ମହାରାଜ ! କାହିଁକି ସମ୍ଭବ ନ ହେବ ? ଆପଣ ମୋ ସହ କିଛି ସୈନିକ ପଠାନ୍ତୁ । ଆଉ ଦେଖନ୍ତୁ କ'ଣ ହେଉଛି ।" ଅମରପାଳ ଦମ୍ଭ ଦେଖାଇ କହିଲା । (କ୍ରମଶଃ)





# ବଚନ-ଭଙ୍ଗ ?

ନିଶା ଗରଜୁଥାଏ । ହୁହାଲୁ ହୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ କୌଣସି କାର୍ଯ୍ୟ ହାସଲ କରିବା ନିମନ୍ତେ ନିଶ୍ଚୟ କାହାକୁ କଥା ଦେଇଛ । କିନ୍ତୁ ତମ କଥା ତମେ ରକ୍ଷା କରିବ, ଏ ବିଷୟରେ ତମେ

## ବେତାଳ କଥା



ନିଶ୍ଚିତ କି? ନିଜ ସିଦ୍ଧାନ୍ତରେ ଖୁବ୍ କମ୍ ଲୋକ ଅଟଳ ରହି ପାରନ୍ତି । ତମକୁ ଗୋଟିଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ! ଶୁଣିଲେ ଶ୍ରମଭର ଲଘବ ମନେ ହେବ ।"

ବେତାଳ ଗପିଲା: ଅନେକ ଦିନ ତଳର କଥା । ବିଜୟପୁରର ରାଜକନ୍ୟା ସୁବର୍ଣ୍ଣା ଥରେ ନିଜ ମାମୁଁ ଘର ରାଜ୍ୟରୁ ଫେରୁଥାନ୍ତି । ତାଙ୍କ ପାଲିଙ୍କି ସାଥିରେ ଦେହରକ୍ଷୀମାନେ ଚାଲିଥାନ୍ତି । ତାଙ୍କର ପରିଚାରିକାମାନେ ଟିକିଏ ପଛରେ ପଡ଼ିଯାଇଥିଲେ ।

ଦୁଇ ରାଜ୍ୟର ସୀମାନ୍ତରେ ପାହାଡ଼ିଆ ଅଞ୍ଚଳ ପଡ଼େ । ଘାଟି ଭିତର ଦେଇ ରାଜକୁମାରୀଙ୍କ ପାଲିଙ୍କି ଆସୁଛି, ହଠାତ୍ ଗୋଟିଏ ଦସ୍ୟୁଦଳ ସେ ପାଲିଙ୍କି ଘେରିପକେଇଲେ । ରାଜକୁମାରୀଙ୍କ ଦେହରେ ଅନେକ ଅଳଙ୍କାର ଥିବା ଯୋଗୁଁ କିମ୍ବା ରାଜକୁମାରୀଙ୍କୁ ହରଣଚାଲ କରିନେବା ଉଦ୍ଦେଶ୍ୟରେ ସେମାନେ ଆକ୍ରମଣ କଲେ, ଏକଥା କହିବା ସମ୍ଭବ ନୁହେଁ ।

ଯେଉଁ ସମୟର କଥା କୁହା ଯାଉଛି, ସେତେବେଳେ ରାସ୍ତାଘାଟ ପ୍ରାୟ ନିରାପଦ ଥିଲା । ଚୋରି ଡକାଏତି ଯେ ହେଉ ନଥିଲା, ତାହା ନୁହେଁ, କିନ୍ତୁ ସଂଗଠିତ ଭାବରେ ଦିବାଲୋକରେ ଯାତ୍ରୀଦଳ ଉପରେ ବା କାହା ଘର ଉପରେ ହାମ୍‌ଲା କରିବାରେ ଦୃଷ୍ଟାନ୍ତ ଦେଖାଯାଉ ନଥିଲା । ନୂଆ କରି ଗୋଟିଏ ଦସ୍ୟୁଦଳ ଦୁଃସାହସିକ ଭାବରେ ଡକାଏତି ଓ ନିଷ୍ଠୁରତା ଆରମ୍ଭ କରିଥିଲେ ସତ, କିନ୍ତୁ ସେ ବିଷୟରେ ରାଜାଙ୍କ ପାଖରେ ସବିଶେଷ ସମ୍ବାଦ ପହଞ୍ଚି ନଥିଲା ।

ରାଜକୁମାରୀଙ୍କ ଦେହରକ୍ଷୀମାନେ ଏଭଳି ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲେ । ତା'ଛଡ଼ା ଦସ୍ୟୁଦଳ ସଂଖ୍ୟାରେ ସେମାନଙ୍କଠାରୁ ଅଧିକ ଥିଲେ ।

ଦେହରକ୍ଷୀମାନେ ହଟିଯିବାକୁ ଲାଗିଲେ । ଦସ୍ୟୁଦଳର ସର୍ଦ୍ଦାର ପ୍ରଚଣ୍ଡ ଅଟ୍ଟହାସ୍ୟ କରି ରାଜକୁମାରୀଙ୍କ ପାଲିଙ୍କି ଆଡ଼େ ମାଡ଼ି ଆସୁଥାଏ, ସେତିକିବେଳେ ଗୋଟିଏ ଅପ୍ରତ୍ୟାଶିତ ଘଟଣା ଘଟିଲା । ପାହାଡ଼ ଶିଖରରୁ ଖଣ୍ଡିଏ ପ୍ରକାଣ୍ଡ ପଥର ଆସି ତା' ମୁଣ୍ଡରେ ପଡ଼ିଲା ଓ ତାକୁ

ତତ୍କ୍ଷଣାତ୍ ମୃତ୍ୟୁମୁଖକୁ ପଠାଇଦେଲା । ପରେ ପରେ ଆହୁରି ପଥରଖଣ୍ଡମାନ ଦସ୍ୟୁଦଳ ଉପରେ ପଡ଼ି ସେମାନଙ୍କୁ ଜଳବଳ କଲେ । ସଙ୍ଗେ ସଙ୍ଗେ ଚିତ୍କାର କରି ଦଳେ ଯୁବକ ପାହାଡ଼ରୁ ଓହ୍ଲାଇ ଆସି ଅବଶିଷ୍ଟ ଦସ୍ୟୁ-ମାନଙ୍କୁ ସାମ୍ନା କଲେ । ରାଜକୁମାରୀଙ୍କ ଦେହରକ୍ଷୀମାନେ ବି ସେତେବେଳେ ନୂତନ ସାହସ ପାଇ ସେ ଯୁବକମାନଙ୍କ ସହାୟତାରେ ଦସ୍ୟୁମାନଙ୍କୁ କାବୁ କରି ପକାଇଲେ ।

ସେ ଯୁବକଦଳର ନେତାର ନାମ ଶେଖର । ସେମାନେ ରାଜଧାନୀରେ ଗୋଟିଏ ପ୍ରତି-ଯୋଗିତାରେ ଯୋଗ ଦେଇ ନିଜ ନିଜ ଗାଁକୁ ଫେରୁଥିଲେ । କିଛୁଦିନ ତଳେ ବୁଦ୍ଧି କୌଶଳ ପ୍ରଦର୍ଶନରେ ଶ୍ରେଷ୍ଠ ବିବେଚିତ ହୋଇ ଶେଖର ରାଜକୁମାରୀଙ୍କ ହାତରୁ ସ୍ୱର୍ଣ୍ଣପଦକ ଲାଭ କରିଥିଲା ।

ଶେଖର ଓ ତା' ସାଥୀମାନେ ଦସ୍ୟୁମାନଙ୍କୁ ସେଇଠାରେ ଜଗି ରହିଲେ । ଶେଖରର ନିର୍ଦେଶରେ ରାଜକୁମାରୀଙ୍କ ପାଲିଙ୍କି ଦେହରକ୍ଷୀ-ବେଷ୍ଟିତ ହୋଇ ରାଜଧାନୀ ଅଭିମୁଖେ ଚାଲିଲା । ସେତେବେଳକୁ ରାଜ-କୁମାରୀଙ୍କ ସଖୀମାନେ ବି ସେଠାରେ ଆସି ପହଞ୍ଚି ଯାଇଥାନ୍ତି । ରାଜକୁମାରୀଙ୍କ ସହ ସେମାନେ ବି ଚାଲିଗଲେ ।

ସେମାନେ ନଅରରେ ପହଞ୍ଚି ସବୁ କଥା କହିବା ମାତ୍ରେ ରାଜାଙ୍କ ସୈନ୍ୟଦଳ ଆସି ଅଟକ ହୋଇ ରହିଥିବା ଦସ୍ୟୁମାନଙ୍କୁ ଧରି ନେଇଗଲେ ।





ପରଦିନ ରାଜା ଶେଖରଙ୍କୁ ଡକାଇ ତାଙ୍କୁ ଦରବାରରେ ଅଭିନନ୍ଦନ ଜଣାଇ ପଚାରିଲେ, "ତମେ କି ପୁରସ୍କାର ପାଇଲେ ଖୁସି ହେବ ?"

ଶେଖର କହିଲା, "ମହାରାଜ! ଆପଣଙ୍କର ଆପତ୍ତି ନଥିଲେ ମୁଁ ଥରେ ରାଜକୁମାରୀଙ୍କୁ ଭେଟିବାକୁ ଚାହେଁ। ପୁରସ୍କାର କଥା ତାଙ୍କୁ କହିବି।"

ରାଜାଙ୍କ ଅନୁମତି ନେଇ ଶେଖର ଯାଇ ରାଜକୁମାରୀଙ୍କୁ ଭେଟିଲା ଓ କହିଲା, "ମୁଁ ତୁମ ପିତାଙ୍କୁ କହିଛି କି ମୁଁ ଯେଉଁ ପୁରସ୍କାର ନେବି, ତାହା ତୁମଠାରୁ ନେବି।"

"କି ପୁରସ୍କାର ଚାହଁ ?" ରାଜକୁମାରୀ ପଚାରିଲେ।

"ତମେ ମୋର ବୀରତ୍ୱର ପରିଚୟ ପାଇଥିଲ ଓ ମୋତେ ସ୍ୱର୍ଣ୍ଣପଦକ ଦେଇଥିଲ। ଏଥର ମୋର ସାହସର ପରିଚୟ ମଧ୍ୟ ପାଇଲ। ମୁଁ ଯେଉଁ ପୁରସ୍କାର ମାଗିବି, ତାହା ମଞ୍ଜୁର କରିବ ତ ?"

"ମୋ ସାଧ୍ୟ ହେଲେ କରିବି।" ରାଜକୁମାରୀ କହିଲେ।

"ତୁମେ ତେବେ ମୋତେ ବିଭା ହୁଅ। ଏହା ତୁମ ସାଧ୍ୟର ବାହାରେ, ଏକଥା କହିପାରିବ କି ?" ଶେଖର କହିଲା।

ରାଜକୁମାରୀ କିଛି ସମୟ ନୀରବ ରହିଲେ ଓ ତା'ପରେ କହିଲେ, "ଏହା ମୋ ସାଧ୍ୟ ଭିତରେ କି ନୁହେଁ, କହିପାରିବି ନାହିଁ। ତେବେ ମୋ ବାପା ଯଦି ଆପତ୍ତି ନ କରିବେ, ତେବେ ମୋର ବି ଆପତ୍ତି ନାହିଁ। ମୁଁ ବାପାଙ୍କୁ ପଚାରିବି।"

ଶେଖର ଖୁସି ହୋଇ ଚାଲିଗଲା। ରାଜକୁମାରୀ ଯାଇ ରାଜାଙ୍କୁ ତା' ବକ୍ତବ୍ୟ ଶୁଣାଇଲେ। ରାଜା ପଚାରିଲେ, "ତୁ କ'ଣ ଶେଖରକୁ ବିଭା ହେବାକୁ କଥା ଦେଇଛୁ ?" ରାଜକୁମାରୀ କହିଲେ, "ନା, ନା। ତେବେ କୌଣସି ରାଜପରିବାରର ଯୁବକ ନ ହେଲେ ମୁଁ ବିଭା ହେବି ନାହିଁ, ଏମିତି କଥା କହିନାହିଁ। ଶେଖର ସାହସୀ ଓ ବୀର। ତେଣୁ ତାକୁ ବିଭା ହେବାକୁ ମୋର ଆପତ୍ତି ନାହିଁ। ଏତିକି ହେଲା କଥା।"

ରାଜା କହିଲେ, "ଆଚ୍ଛା ହେଉ, ଦେଖିବା।" ଏହାପରେ କିନ୍ତୁ ରାଜା ଶେଖରକୁ କହି ପଠାଇଲେ କି ରାଜକୁମାରୀଙ୍କୁ ବିଭା ହେବା ତାହା ପକ୍ଷରେ ସମ୍ଭବପର ନୁହେଁ ।

ଶେଖର ଥରେ ସୁଯୋଗ ପାଇ ରାଜକୁମାରୀଙ୍କୁ ସେକଥା କହିଲା । ରାଜକୁମାରୀ କହିଲେ, "କିଛିଦିନ ଧୈର୍ଯ୍ୟ ଧର । ମୁଁ ବାପାଙ୍କୁ ଆଉ ଥରେ ବୁଝାଇ ଦେଖିବି ।"

ଏହାର ବର୍ଷକ ପରେ ରାଜା ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ଦିନେ ସେ ରାଜକୁମାରୀଙ୍କୁ ପାଖକୁ ଡାକି କହିଲେ, "ଝିଅ! ତୋ ବିବାହ ବିଷୟ ପ୍ରତି ଆଜି ପର୍ଯ୍ୟନ୍ତ ମୁଁ ମନଦେଇ ପାରିଲି ନାହିଁ । ବର୍ତ୍ତମାନ ସେଇଟା ମୋର ଚିନ୍ତା ହୋଇ ଦେଖା ଦେଇଛି ।"

ରାଜକୁମାରୀ ସୁଯୋଗ ପାଇ ପିତାଙ୍କୁ ଶେଖର କଥା କହିବାକୁ ଯାଉଥିଲେ, ସେତିକିବେଳେ ଜଣେ ପ୍ରହରୀ ଦଉଡ଼ି ଆସି ଗୋଟାଏ ଦାରୁଣ ଦୁଃସମ୍ବାଦ ଦେଲା । ରାଜାଙ୍କର ଏକମାତ୍ର ପୁତ୍ର ଘୋଡ଼ା ଛୁଟାଇ ପାହାଡ଼ିଆ ରାସ୍ତାରେ ଯାଉଥିବା ବେଳେ ଘୋଡ଼ା ଠାଏଁ ଝୁଣ୍ଟି ପଡ଼ିଲା । ରାଜକୁମାର ତା' ଉପରୁ ଛିଟିକି ଯାଇ ରାସ୍ତାଠୁଁ ବହୁତ ତଳେ ପଥୁରିଆ ସ୍ଥାନରେ ପଡ଼ିଲେ ଓ ତାଙ୍କ ପ୍ରାଣବାୟୁ ନିର୍ଗତ ହୋଇଗଲା ।

ଏ ସମ୍ବାଦ ପାଇବା ପରେ ରାଜା ଆଉ ସୁସ୍ଥ ହେବେ କ'ଣ, ଦୁଇଦିନ ପରେ ସେ ପରଲୋକଗମନ କଲେ ।



ସୁବର୍ଣ୍ଣା ମର୍ମାହତ ହେଲେ । ଯାହାହେଉ, ସେ ଶୋକ ସମ୍ବରଣ କରି ଭାଇ ଓ ବାପାଙ୍କର ଯଥାବିଧି ଶ୍ରାଦ୍ଧ ସତ୍କାର ଇତ୍ୟାଦି କଲେ । ରାଜ୍ୟରେ ଏକମାସ ଧରି ଶୋକ ପାଳନ ହେଲା । ସବୁ ଉତ୍ସବ ଆପଣାଛାଏଁ ଲୋକେ ବନ୍ଦ କରିଦେଲେ ।

ରାଜକୁମାରୀ ସୁବର୍ଣ୍ଣାଙ୍କ ବ୍ୟତୀତ ରାଜାଙ୍କର ଆଉ କୌଣସି ସନ୍ତାନ ଜୀବିତ ନଥିଲେ । ଅତଏବ ସୁବର୍ଣ୍ଣା ସିଂହାସନରେ ବସିଲେ ।

ଅଭିଷେକ ପରେ ପରେ ସୁବର୍ଣ୍ଣା ରାଜକାର୍ଯ୍ୟରେ ମନୋନିବେଶ କଲେ । ମାସକ ଭିତରେ ସେ ନିଜକୁ ସୁଶାସିକା ପ୍ରତିପାଦିତ କଲେ ।



ଏଣିକି ସେ କୌଣସି ରାଜପୁତ୍ରକୁ ବିଭା ହେବାର ପ୍ରଶ୍ନ ନଥିଲା । କାରଣ ସେ ଅନ୍ୟ ରାଜ୍ୟର ରାଣୀ ହୋଇ ବିଜୟପୁରରୁ ଚାଲିଯାଇ ପାରିବେ ନାହିଁ । ସେ ଜଣେ ସାଧାରଣ ଯୁବକକୁ ବିଭା ହେବା କଥା । ଯିଏକି ବିଜୟପୁରରେହିଁ ରହିବ ଓ ରାଜକାର୍ଯ୍ୟରେ ତାଙ୍କ ସହାୟତା କରିବ । ସେ ଶେଖର ପାଖକୁ ଲୋକ ପଠାଇଲେ । କିନ୍ତୁ ଦୂତ ଲେଉଟି ଆସି ଖବର ଦେଲା ଶେଖର ତା' ଗାଁରେ ନାହିଁ । କୁଆଡ଼େ ଯାଇଛି, ସେ କଥା ବି କେହି କହି ପାରିଲେ ନାହିଁ ।

ସେତିକିବେଳେ ରାଜ୍ୟ ସୀମାନ୍ତର ପାର୍ବତ୍ୟ ଅଞ୍ଚଳରେ ଗୋଟାଏ ଡାକୁଦଳ ମାତିବାର ଶୁଣାଗଲା । ରାଣୀ ସୁବର୍ଣ୍ଣା ତାକୁ ଦମନ କରିବାର ଯୋଜନା କରିବାକୁ ଲାଗିଲେ । ସେ ଦିଗରେ କୌଣସି ପଦକ୍ଷେପ ନେବା ପୂର୍ବରୁ ସେ ରାଜ୍ୟର ଜନସାଧାରଣଙ୍କ ହାଲଚାଲ ବୁଝିବା ନିମନ୍ତେ ଥରେ ଛଦ୍ମବେଶରେ ବାହାରି ପଡିଲେ । ମାତ୍ର ଚାରିଜଣ ଦେହରକ୍ଷୀ ଛଦ୍ମବେଶରେ ତାଙ୍କୁ ଅନୁସରଣ କଲେ ।

ପାହାଡ଼ିଆ ଅଞ୍ଚଳର ଆରପଟେ ଗୋଟିଏ ପ୍ରାଚୀନ ଶିବ ମନ୍ଦିର ଥାଏ । ସେଠି ଶିବରାତ୍ରୀ ପାଳନ କରିବା ନିମନ୍ତେ ବିଜୟପୁର ତଥା ଆଖପାଖର ଅନ୍ୟ କେତେକ ରାଜ୍ୟରୁ ବି ଭକ୍ତମାନେ ଆସୁଥାନ୍ତି । ସୁବର୍ଣ୍ଣା ଜଣେ ସାଧାରଣ ମହିଳା ବେଶରେ ସେହି ଯାତ୍ରୀମାନଙ୍କ ସହ ମନ୍ଦିରକୁ ଗଲେ । ରାଜଧାନୀରୁ ତାହା ଦୁଇଦିନର ବାଟ ।

ଶିବରାତ୍ରୀ ପରଦିନ ସେ କେତେକ ଯାତ୍ରୀଙ୍କ ସହ ପାହାଡ଼ିଆ ମୂଲକ ଦେଇ ଫେରୁଥାନ୍ତି । ସେତେବେଳକୁ ସଞ୍ଜ ହୋଇ ଆସୁଛି । ହଠାତ୍ ଯାତ୍ରୀମାନଙ୍କ ଉପରେ ଚଢ଼ାଉ କଲେ ଗୋଟିଏ ଦସ୍ୟୁଦଳ । ସେମାନେ ସୁବର୍ଣ୍ଣାଙ୍କୁ ଧରି ନେଇ ଗୋଟାଏ ଘୋଡ଼ାଗାଡ଼ିରେ ବସାଇ ଦେଲେ ।

ଗାଡ଼ି ଯାଇ ଗୋଟାଏ ଗହନ ବଣରେ ପହଞ୍ଚିଲା । ଅନେକ ଦିନ ତଳେ ସେଠାରେ ରାଜାଙ୍କର ଗୋଟାଏ ପଥର ଘର ଥିଲା । ସୀମାନ୍ତ ଜଗିବା ନିମନ୍ତେ ତାହା ନିର୍ମିତ

ହୋଇଥିଲା, କିନ୍ତୁ ପଡ଼ୋଶୀ ରାଜ୍ୟ ବନ୍ଧୁରାଜ୍ୟ ହୋଇଥିବାରୁ ସେ ଘର ପରିତ୍ୟକ୍ତ ହୋଇ ପଡ଼ିଥିଲା । ସୁବର୍ଣ୍ଣାଙ୍କୁ ସେହି ଘର ଭିତରକୁ ନିଆଗଲା । ସେଠାରେ ଦସ୍ୟୁ-ସର୍ଦ୍ଦାର ତାଙ୍କୁ ଅପେକ୍ଷା କରିଥାଏ । ସେ କହିଲା, "ଭୟ ନାହିଁ । ମୁଁ ମୋ ଅନୁଚରମାନଙ୍କୁ କହିଥିଲି ମୋ ପାଇଁ ଗୋଟିଏ ସୁନ୍ଦରୀ କନ୍ୟା ଧରି ଆଣିବା ପାଇଁ । ମୁଁ ବିଭା ହେବି । ସେମାନେ ମନ୍ଦିରରେ ଜନସମାଗମ ଉପରେ ଆଖି ରଖିଥିଲେ । ସେମାନଙ୍କ ରୁଚିକୁ ମୁଁ ତାରିଫ୍ କରୁଛି । କିନ୍ତୁ ତମକୁ କେଉଁଠି ଦେଖିଥିଲି ଭଳି ମନେ ହୁଏ ।"



"ଶେଖର! ତମେ ମୋତେ ଚିହ୍ନିପାରୁ ନାହଁ?" ସୁବର୍ଣ୍ଣା ପଚାରିଲେ ।

ଶେଖର ଚମକି ପଡି କହିଲା, "ମୋର ନାମ ତୁମେ କିପରି ଜାଣିଲ? ମୋତେ ମୋ ଦଳର ଲୋକେ ଖାଲି ସର୍ଦ୍ଦାର ବୋଲି ଡାକନ୍ତି!"

ସୁବର୍ଣ୍ଣା କହିଲେ, "ମୁଁ ରାଜକୁମାରୀ ସୁବର୍ଣ୍ଣା । ସାଧାରଣ ବେଶରେ ବୁଲିଥିଲି । ରାଜ୍ୟର ସିଂହାସନ ମୋତେ ମିଳିଛି । ପରେ ପରେ ମୁଁ ବିଭା ହେବା ନିମନ୍ତେ ତମକୁ ଖୋଜିବାକୁ ଲୋକ ପଠାଇଥିଲି । କିନ୍ତୁ ସେମାନେ ତମକୁ ପାଇଲେ ନାହିଁ ।"

ଶେଖର ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇ କହିଲା, "କି ଚମତ୍କାର ଯୋଗାଯୋଗ! ଆମର ଏ ସାକ୍ଷାତ୍ ବିଧି-ନିର୍ଦ୍ଦିଷ୍ଟ । ନା କ'ଣ କହୁଛ?"

"ଠିକ୍ । ଏହା ବିଧି-ନିର୍ଦ୍ଦିଷ୍ଟ ।" ସୁବର୍ଣ୍ଣା କହିଲେ ।

ସୁବର୍ଣ୍ଣା ଯେହେତୁ ତାକୁ ସ୍ୱେଚ୍ଛାରେ ବିଭା ହେବାକୁ ଚାହୁଁଥିଲେ, ତେଣୁ ଶେଖର ତାଙ୍କ ଉପରେ ପ୍ରହରୀ ରଖିବା ଆବଶ୍ୟକ ମନେ କଲା ନାହିଁ । ସୁବର୍ଣ୍ଣା ସ୍ୱଚ୍ଛନ୍ଦରେ ସେଠି ବିଚରଣ କଲେ । ତାଙ୍କୁ ଅନୁସରଣ କରି ଆସିଥିବା ଛଦ୍ମବେଶୀ ଦେହରକ୍ଷୀମାନଙ୍କୁ ସେ ତୁରନ୍ତ ଇଙ୍ଗିତ ଦେଲେ । କେଇ ଘଣ୍ଟା ପରେ ଅଚାନକ ଭାବରେ ସୈନ୍ୟବାହିନୀ ଆସି ଶେଖର ସମେତ ସବୁ ଦସ୍ୟୁଙ୍କୁ ବନ୍ଦୀ କଲେ!

କଠୋର କଣ୍ଠରେ ରାଣୀ ସୁବର୍ଣ୍ଣା ନିର୍ଦ୍ଦେଶ ଦେଲେ, "ଏମାନଙ୍କୁ କାରାରୁଦ୍ଧ କର । ବିଚାରରେ ଯଦି ପ୍ରାଣଦଣ୍ଡ ମିଳେ, ତାହାହିଁ ଏମାନଙ୍କର କର୍ମଫଳ ।"

ବେତାଳ ଟିକିଏ ଚୁପ୍ ରହି ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ସୁବର୍ଣ୍ଣାଙ୍କ ବ୍ୟବହାର ଅତ୍ୟନ୍ତ ନିନ୍ଦନୀୟ ନୁହେଁ କି? ସେମାନଙ୍କ ସାକ୍ଷାତ ପୂର୍ବ ବିଧି-ନିର୍ଦ୍ଦିଷ୍ଟ ବୋଲି ସେ ଶେଖର ସହିତ ଏକମତ ବି ହୋଇଥିଲେ । ଏହା ସତ୍ତ୍ୱେ ସେ ଯାହା କଲେ, ତାହା ବିଶ୍ୱାସଘାତକତା ନୁହେଁ କି? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ସୁବର୍ଣ୍ଣାଙ୍କ ବ୍ୟବହାର ଯଥାର୍ଥ । ସେ ଦିନେ ସାହସୀ ଓ ବୀର ଶେଖରଙ୍କୁ ବିଭା ହେବାକୁ ପ୍ରସ୍ତୁତ ଥିଲେ, ଦସ୍ୟୁ ଶେଖରକୁ ନୁହେଁ । ଶେଖର ପ୍ରତି ତାଙ୍କର ବ୍ୟକ୍ତିଗତ ଅନୁରାଗ ବା ଆସକ୍ତି ଥିବାର କୌଣସି ପ୍ରମାଣ ନାହିଁ । ରାଣୀ ରୂପେ ସେ ଜଣେ ଦସ୍ୟୁ ସର୍ଦ୍ଦାରକୁ ବିଭା ହେବାର ପ୍ରଶ୍ନ ତ ନଥିଲା, ଦସ୍ୟୁ ଦମନହିଁ ତାଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା । ସେମାନଙ୍କ ସାକ୍ଷାତ୍‌କୁ ଶେଖର ଯେଉଁ କାରଣରୁ ବିଧି-ନିର୍ଦ୍ଦିଷ୍ଟ ବୋଲି କହିଲା, ସୁବର୍ଣ୍ଣା ସେ କାରଣରୁ କହି ନଥିଲେ । ଶେଖରକୁ ଯଦି ତାଙ୍କ ଦୂତ ପୂର୍ବରୁ ଭେଟିଥାନ୍ତା, ତେବେ ଶେଖର ଦସ୍ୟୁ ବୋଲି ନ ଜାଣି ସେ ତାକୁ ହୁଏତ ବିଭା ହୋଇ ପଡ଼ିଥାନ୍ତେ! ତେଣୁ ଶେଖରକୁ ସେଭଳି ରୂପରେ ସେ ଭେଟିବା ବିଧି-ନିର୍ଦ୍ଦିଷ୍ଟ ବୋଲି ସେ ବୁଝାଉଥିଲେ ।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






ଭାରତର ମନ୍ଦିର

# ଗୟା ଓ ବୁଦ୍ଧଗୟା

ହଜାର ହଜାର ବର୍ଷ ତଳର କଥା । ଗୋଟିଏ ଯୁବକ ଅସୁର ଥରେ ତପସ୍ୟାରେ ମଗ୍ନ ହେଲା । ସେ ବିଷ୍ଣୁଙ୍କ ଉପରେ ମନୋନିବେଶ କରି ନିଜେ ଅସୀମ ଶକ୍ତିଶାଳୀ ହେବା ନିମନ୍ତେ ପ୍ରାର୍ଥନା କଲା ।

ତା'ର ସେ ତପଶ୍ଚର୍ଯ୍ୟା ଦେଖି ଦେବତାମାନେ ଆତଙ୍କ ଗଣିଲେ । ସେ ଯଦି ଅସୀମ ଶକ୍ତିଶାଳୀ ହୋଇ ଉଠିବ, ତେବେ ସେମାନଙ୍କ ପ୍ରତି ତା'ର ବ୍ୟବହାର କିପରି ହେବ ? ସେମାନେ ଅସୁରର ତପସ୍ୟାରେ ବିଘ୍ନ ଘଟାଇବାକୁ ମନସ୍ଥ କଲେ ।





ଗୟାସୁର ନାମଧାରୀ ସେ ଅସୁର ପାଖକୁ ଆସି ଜଣେ ଦେବତା କହିଲେ, "ମୁଁ ବଡ଼ କ୍ଲାନ୍ତ । ତମ କାନ୍ଧରେ ବସି ଟିକିଏ ବିଶ୍ରାମ କରି ପାରିବ ?" ଗୟାସୁର ସେଥିରେ ସମ୍ମତ ହେଲା । ତା' କାନ୍ଧ ଚଢ଼ି ବସିଲେ ସେ ଦେବତା ।



ପରେ ପରେ ସେଠାରେ ପହଞ୍ଚିଗଲେ ଆହୁରି କେତେ ଦେବତା । ସମସ୍ତଙ୍କର ସେହି ଗୋଟିଏ ଅନୁରୋଧ: ସେମାନେ ଗୟାସୁର ଉପରେ ବସି ବିଶ୍ରାମ କରିବେ । ଗୟାସୁର ନିଜ କଳେବରକୁ ବିଶାଳ କରି ଦେଲା ଓ ଦେବତାମାନଙ୍କୁ ତା'ର ଭିନ୍ନ ଭିନ୍ନ ଅଙ୍ଗ ଉପରେ ବସିବାକୁ ସ୍ଥାନ ଦେଲା ।

ଦେବତାମାନେ ସେଉଠୁ ତାକୁ ଭୂତଳକୁ ଠେଲିବାକୁ ଲାଗିଲେ । ଗୟାସୁର ସେମାନଙ୍କ ଉଦ୍ଦେଶ୍ୟ ବୁଝିଲା । ସେତେବେଳକୁ ବିଷ୍ଣୁଙ୍କ ପ୍ରତି ଭକ୍ତିର ମହିମାରେ ତା' ମନରୁ କ୍ଷମତାଲିପ୍ସା ଦୂର ହୋଇଥାଏ । ସେ କହିଲା, "ଗୋଟିଏ ସର୍ତ୍ତରେ ମୁଁ ଆପଣାଛାଏଁ ଭୂତଳକୁ ଚାଲିଯିବି । ସେ ସର୍ତ୍ତ ହେଲା, ତମେମାନେ ସବୁଦିନ ମୋତେ ଏମିତି ଧରି ରହିଥିବ ।"





ଦେବତାମାନେ ରାଜି ହେବାରୁ ଗୟାସୁର ଭୂତଳକୁ ଚାଲିଗଲା । ସେ ସ୍ଥାନରେ ବ୍ରହ୍ମା ଗୋଟିଏ ଯଜ୍ଞ କଲେ । ଗୟାସୁର ସେଠି ପ୍ରୋଥିତ ଥିବାରୁ ଓ ତଦୁପରେ ବ୍ରହ୍ମାଙ୍କ ଯଜ୍ଞାନୁଷ୍ଠାନ ଯୋଗୁଁ ସ୍ଥାନଟି ଅତ୍ୟନ୍ତ ପବିତ୍ର ହେଲା । ବିଷ୍ଣୁ ଗୟାସୁରର ନମ୍ରତାରେ ଅତ୍ୟନ୍ତ ପ୍ରୀତ ହୋଇ ସେଠାରେ ଆବିର୍ଭୂତ ହୋଇ ସେ ସ୍ଥଳ ପ୍ରତି ନିଜର ଶୁଭେଚ୍ଛା ଜ୍ଞାପନ କଲେ ।

ଯେଉଁ ସ୍ଥାନରେ ବିଷ୍ଣୁ ଆବିର୍ଭୂତ ହୋଇଥିଲେ, ସେ ସ୍ଥାନରେ ତାଙ୍କ ପାଦପଦ୍ମର ଚିହ୍ନ ରହିଛି ବୋଲି ବିଶ୍ୱାସ କରାଯାଏ । ସେଠାରେ ଥିବା ମନ୍ଦିରର ନାମ ବିଷ୍ଣୁପାଦ ମନ୍ଦିର । ବର୍ତ୍ତମାନ ଯେଉଁ ମନ୍ଦିରଟି ଦେଖାଯାଏ, ତାହା ସେଠାରେ ଥିବା ପ୍ରାଚୀନ ମନ୍ଦିର ସ୍ଥାନରେ ଇନ୍ଦୋରର ରାଣୀ ଅହଲ୍ୟାବାଈଙ୍କ ନିର୍ମିତ ମନ୍ଦିର ।






ପୂର୍ବ ପୁରୁଷମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ ଦେବା ନିମନ୍ତେ ଗୟା ନାମରେ ପ୍ରସିଦ୍ଧ ଏ ସ୍ଥାନ ବିଶେଷ ପବିତ୍ର ବୋଲି ପରିଗଣିତ ହୋଇ ଆସିଛି । ପିତୃଲୋକ ଉଦ୍ଦେଶ୍ୟରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ନିମନ୍ତେ ପ୍ରତ୍ୟହ ସେଠାରେ ଜନସମାଗମ ଘଟିଥାଏ ।

ସେହି ସ୍ଥାନରେ ଭୂଗର୍ଭରେ ପ୍ରବାହିତ ହେଉଛି ଅଦୃଶ୍ୟ ନଦୀ ଫଲ୍‌ଗୁ । ବାଲି ଟିକିଏ ଖୋଳିଲେ ଫଲ୍‌ଗୁର ଜଳଧାର ଦେଖାଯିବ । ଫଲ୍‌ଗୁର ଜଳ ଅତ୍ୟନ୍ତ ପବିତ୍ର । ସେହି ଜଳରେ ପିଣ୍ଡଦାନ ଦିଆଯାଏ । ଫଲ୍‌ଗୁ ଭାରତର ସୁପ୍ରାଚୀନ ନଦୀମାନଙ୍କ ଭିତରେ ଅନ୍ୟତମ ।





ଗୟାଠାରୁ ଚଉଦ କିଲୋମିଟର ଦୂରରେ ବୁଦ୍ଧଗୟା ଅବସ୍ଥିତ । ଏହିଠାରେ ଗୋଟିଏ ବୋଧିଗଛ ମଳରେ ତପସ୍ୟା କରି ଗୌତମ ବୁଦ୍ଧ ସିଦ୍ଧି ଲାଭ କରିଥିଲେ । ବର୍ତ୍ତମାନ ଯେଉଁ ବୋଧି ବୃକ୍ଷ ଦେଖାଯାଏ, ତାହାର ବୟସ ଶତାଧିକ ବର୍ଷ । ତାହା ମୂଳ ବୋଧି ବୃକ୍ଷର ବଂଶଧର ।

ସେଠାରେ ଥିବା ମହାବୋଧି ମନ୍ଦିର ବୌଦ୍ଧ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଏକ ଚମତ୍କାର ନିଦର୍ଶନ । ଭିତରେ ବୁଦ୍ଧଦେବଙ୍କର ସୁନ୍ଦର ମୂର୍ତ୍ତି ରହିଛି । ଏହାର ପ୍ରବେଶ ଦ୍ୱାରର ଶିଳ୍ପ କାର୍ଯ୍ୟ ମନୋମୁଗ୍ଧକର । ବୌଦ୍ଧ, ହିନ୍ଦୁ ଓ ଅନ୍ୟ ଧର୍ମାବଲମ୍ବୀମାନେ ବହୁ ସଂଖ୍ୟାରେ ଏହା ଦେଖିବାକୁ ଯା'ନ୍ତି ।






ମହାବୋଧି ମନ୍ଦିରର ଅଦୂରରେ ଅନିମେଷଲୋଚନ ଚୈତ୍ୟ ଅବସ୍ଥିତ । ସିଦ୍ଧି ଲାଭ ପରେ ବୁଦ୍ଧଦେବ ଏହି ସ୍ଥାନରେ ଦୀର୍ଘ ସମୟ ଧରି ଅନିମେଷ ନୟନରେ ଦୂର ଦିଗ୍‌ବଳୟକୁ ଅନାଇ ଟିଆ ହୋଇ ରହିଥିଲେ । ସେତେବେଳେ ତାଙ୍କ ହୃଦୟରେ କୃତଜ୍ଞତା ଭରି ରହିଥିଲା । ଏ ସ୍ଥାନ ଅତ୍ୟନ୍ତ ପବିତ୍ର ।



# ଅନୁସନ୍ଧାନ

ରାଜଧାନୀ ପାଟଳିପୁର ଯିବା ବାଟରେ ଶିବପୁର ପଡୁଥାଏ। ତାହା ସେ ଯୁଗରେ ଗୋଟିଏ ବିଶିଷ୍ଟ ସ୍ଥାନ ଥିଲା। ସେଠି ଜଣେ ରାଜ-ପ୍ରତିନିଧି ରହୁଥିଲେ। ଦୂର ବାଟର ଯାତ୍ରୀଙ୍କ ପାଇଁ ଗୋଟିଏ ପାନ୍ଥଶାଳା ବି ଥିଲା।

ଶିବପୁରରେ ଯିଏ ରାଜ-ପ୍ରତିନିଧି ରୂପେ ରହୁଥିଲେ, ତାଙ୍କ ନାମ ଶ୍ୟାମସୁନ୍ଦର। ଦିନେ ପାନ୍ଥଶାଳାର ତତ୍ତ୍ୱାବଧାରକ ଦୁଇଜଣ ଲୋକଙ୍କୁ ଧରି ଶ୍ୟାମସୁନ୍ଦରଙ୍କ ନିକଟରେ ପହଞ୍ଚିଲା ଓ କହିଲା, "ମହାଶୟ, ଏ ଦୁଇଜଣ ଲୋକ ଗତ ରାତିରେ ଆସି ପାନ୍ଥଶାଳାରେ ଆଶ୍ରୟ ନେଲେ। ଆଜି ଦେଖିବା ବେଳକୁ ଦୁହେଁ ଗୋଟାଏ ଟଙ୍କାଥଳିକୁ କେନ୍ଦ୍ର କରି ଭୀଷଣ ଝଗଡ଼ା କରୁଛନ୍ତି। ଇଏ କହୁଛି ଥଳି ତା'ର, ସିଏ କହୁଛି ଥଳି ତା'ର। ଦୁହେଁ ପ୍ରାୟ ମାଡ଼ପିଟ ହେବାକୁ ଯାଉଥିଲେ। ମୁଁ ଦୁହିଁଙ୍କୁ ଆପଣଙ୍କ ପାଖକୁ ନେଇ ଆସିଲି।"

ରାଜ-ପ୍ରତିନିଧି ଶ୍ୟାମସୁନ୍ଦର ସେ ଦୁଇଜଣଙ୍କୁ ପ୍ରଶ୍ନ କରି ବୁଝିଲେ କି ଜଣଙ୍କ ନାମ ବାବୁ ଓ ଅନ୍ୟ ଜଣକ ନାମ କାବୁଲି। ବାବୁ କହିଲା ଟଙ୍କା ଥଳି ତା'ର; କାବୁଲି କହିଲା ଟଙ୍କା ଥଳିଟି ତା'ର। ଶ୍ୟାମସୁନ୍ଦର ବୁଝୁଥିଲେ ଯେ ଥଳିଟି ଜଣକର; ଅନ୍ୟଜଣକ ତାକୁ ଆତ୍ମସାତ୍ କରିବାକୁ ଉଦ୍ୟମ କରୁଛି। କିନ୍ତୁ ପ୍ରକୃତ ମାଲିକ କିଏ, ତାହା ଜଣାଯିବ କିପରି? ତାହାହିଁ ହେଲା ପ୍ରଶ୍ନ। ସେ ଯେତେ ଚେଷ୍ଟା କଲେ ବି ଦୁଇଜଣଙ୍କ ଭିତରୁ କେହି ଥଳି ଉପରେ ନିଜ ଦାବି ଛାଡ଼ିବାକୁ ପ୍ରସ୍ତୁତ ହେଲେ ନାହିଁ। ସେ ବିରକ୍ତ ହୋଇ ଦୁଇଜଣଙ୍କୁ ଗୋଟିଏ କୋଠରିରେ ରଖି ଚାବି ପକାଇ ଦେଲେ।

ରମନାଥ ତ୍ରିପାଠୀ



"ଏମାନଙ୍କ ଭିତରୁ ଯିଏ ମିଥ୍ୟା କହୁଛି, ଯେ ପର୍ଯ୍ୟନ୍ତ ସିଏ ସେକଥା ସ୍ୱୀକାର ନ କରିଛି, ସେଯାଏ ଦୁହେଁ ଏମିତି ବନ୍ଦୀ ହୋଇ ରହିବେ । ଦୁଇ ଚାରିଦିନ ନୁହେଁ, ଦରକାର ହେଲେ ମାସ ମାସ ଏମିତି ରହିବେ ! ଟଙ୍କା ଥଳି ବି ସେମିତି ଅଛିଣ୍ଡା ରହିଥିବ ।" ଶ୍ୟାମସୁନ୍ଦର ଏହି ରାୟ ଶୁଣାଇ ଦେଲେ । ସେ ଆଶା କରିଥିଲେ, ଏଥିରେ ଭୀତ ହୋଇ, ଦୀର୍ଘଦିନ କାରାଦଣ୍ଡ ଭୋଗିବା ଧମକରେ ଯିଏ ଅପରାଧୀ ସିଏ ଦୋଷ ସ୍ୱୀକାର କରିବ ଓ ତେଣିକି ବିଚାର ସହଜ ହୋଇଯିବ । କିନ୍ତୁ ସେପରି ଘଟିବାର ଆଶା ଆଶାରେହିଁ ରହିଗଲା ଦୁଇଜଣଯାକ ବନ୍ଦୀ ହୋଇ ରହିଲେ ମଧ୍ୟ କେହି ଟଙ୍କାଥଳି ଉପରେ ନିଜ ଦାବି ଛାଡ଼ିବାକୁ ପ୍ରସ୍ତୁତ ହେଲେ ନାହିଁ ।

"ଠିକ୍ ଅଛି । ଦୁହେଁ ସେମିତି ରହିଥାନ୍ତୁ ।" ଶ୍ୟାମସୁନ୍ଦର ସେମାନଙ୍କୁ ଶୁଣାଇ କହିଲେ ।

କିନ୍ତୁ କେତେ ସମୟ ସେପରି ଭାବରେ ରଖିବେ ? ଜଣେ ଅବଶ୍ୟ ଦୋଷୀ ଏବଂ ସିଏ କଷ୍ଟ ପାଉଛି । କିନ୍ତୁ ଅନ୍ୟ ଜଣକ ତ ନିର୍ଦ୍ଦୋଷୀ! ନିର୍ଦ୍ଦୋଷୀକୁ ଏପରି ଦଣ୍ଡ ଦେବା ଦ୍ୱାରା ତାଙ୍କ ବିବେକ କଷ୍ଟ ପାଉଥିଲା । ସେ କ'ଣ କରିବେ ଏହି ଚିନ୍ତାରେ ଅଛନ୍ତି, ଏପରି ସମୟରେ ଜଣେ ରାଜଦୂତ ଆସି ତାଙ୍କୁ କହିଲେ ଅମାତ୍ୟ ବଲ୍ଲଭଦେବ ଗସ୍ତରେ ବାହାରିଛନ୍ତି । ସେ ଆଜି ରାତିକ ଏଠାକାର ପାନ୍ଥ ନିବାସରେ ରହିବେ ବୋଲି ଆପଣଙ୍କୁ ଖବର ଦେବାକୁ କହିଛନ୍ତି ।"

"ଅତି ଆନନ୍ଦର କଥା ।" ଶ୍ୟାମସୁନ୍ଦର କହିଲେ । ସେ ଅମାତ୍ୟ ବଲ୍ଲଭଦେବଙ୍କୁ ଭେଟି ନଥିଲେ । କିନ୍ତୁ ସେ ଜଣେ ବିଚକ୍ଷଣ ବ୍ୟକ୍ତି ବୋଲି ସେ ଜାଣିଥିଲେ । ସେ ନୂଆ କରି ରାଜାଙ୍କ ଜଣେ ଅମାତ୍ୟ ରୂପେ ଗୃହୀତ ହୋଇଥିଲେ । ରାଜ୍ୟଯାକ ମଧ୍ୟେ ମଧ୍ୟେ ବୁଲି ଶାସନ କାର୍ଯ୍ୟ କିପରି ଚାଲିଛି, ଏହା ଦେଖିବା ଥିଲା ତାଙ୍କ କାମ ।

ଶ୍ୟାମସୁନ୍ଦର ଆନନ୍ଦିତ ହେବାର କାରଣ, ସେ ବଲ୍ଲଭଦେବଙ୍କ ଦ୍ୱାରା ବର୍ତ୍ତମାନ ଦେଖା ଦେଇଥିବା ସମସ୍ୟାଟିର ସମାଧାନ କରିନେଇ

ପାରିବେ । ବଲ୍ଲଭଦେବ ଅଭିଜ୍ଞ ବ୍ୟକ୍ତି । ସେ ନିଶ୍ଚୟ କୌଣସି ଉପାୟରେ କିଏ ଅସଲ ଦୋଷୀ ତାହା ସାବ୍ୟସ୍ତ କରିଦେଇ ପାରିବେ ।

ବଲ୍ଲଭଦେବ ଆସି ଗାଁ ମୁଣ୍ଡରେ ପହଞ୍ଚିବା କ୍ଷଣି ଶ୍ୟାମସୁନ୍ଦର ଯାଇ ତାଙ୍କୁ ପାଛୋଟି ଆଣିଲେ । ପାନ୍ଥଶାଳରେ ତାଙ୍କୁ ରଖାଇ ତାଙ୍କ ପାଇଁ ପଇଡ଼ ପାଣିର ବ୍ୟବସ୍ଥା କରି ସାରି ତାଙ୍କୁ ସେଦିନ ସେ ଯେଉଁ ସମସ୍ୟାରେ ପଡ଼ିଥିଲେ, ସେକଥା କହିଲେ ।

"ଦେଖିବା ସେ ଟଙ୍କା ଥଳି !" ବଲ୍ଲଭଦେବ କହିଲେ । ଶ୍ୟାମସୁନ୍ଦର ଟଙ୍କାଥଳି ଦେଖାଇଲେ । ବଲ୍ଲଭଦେବ କହିଲେ, "ଆରେ ଭାଇ, ଏ ଥଳି ସେ ଦୁଇଲୋକ ଭିତରୁ କାହାର ନୁହେଁ । ଏହା ମୋର । ଦୁଇଦିନ ତଳେ ମୋ ଘରୁ ଏହା ଚୋରି ହୋଇଯାଇଥିଲା !"

ଶ୍ୟାମସୁନ୍ଦର ନୀରବ ରହିଲେ । ବଲ୍ଲଭଦେବ କହିଲେ, "କ'ଣ ହେଲା ? ଥଳି ତ ମୁଁ ପାଇଗଲି । ସେ ଦୁହେଁ ମିଶି ଚୋରି କରିଥିବେ । ପରେ ନିଜ ନିଜ ଭିତରେ ଝଗଡ଼ା କରୁଛନ୍ତି । ସେମାନଙ୍କୁ ଯାହା ଦଣ୍ଡ ଦେବାର ଦେଇଦିଅ । କଥା ତୁଟିଯିବ ।"

ଶ୍ୟାମସୁନ୍ଦର କହିଲେ, "ମହାଶୟ, ମୁଁ ଦେଖୁଛି ଏ ସମସ୍ୟାର ସମାଧାନ ମହାରାଜା ମହୀପସିଂହହିଁ କରି ପାରିବେ ।"

"କାହିଁକି, ତମର କ'ଣ ମୋ କଥାରେ ବିଶ୍ୱାସ ହେଉ ନାହିଁ ?"



"ଆପଣ ଜଣେ ଅମାତ୍ୟ । ତେଣୁ ଆପଣ ମିଛ କହିବେ, ସେ କଥା ସମ୍ଭବ ନୁହେଁ । କିନ୍ତୁ ମୁଁ ଏ କ୍ଷେତ୍ରରେ ବିଚାରକ । ବିନା ପ୍ରମାଣରେ କାହାକୁ ଦଣ୍ଡ ଦେବା ବା ବିନା ପ୍ରମାଣରେ ଆପଣଙ୍କୁ ଟଙ୍କା ଥଳି ଦେଇଦେବା ମୋ କ୍ଷମତା ବାହାରେ । ଏ କ୍ଷେତ୍ରରେ ବିଚାର କଲାଭଳି ବୁଦ୍ଧି ମୋର ନାହିଁ । ତେଣୁ ରାଜା ବିଚାର କରନ୍ତୁ ।" ଶ୍ୟାମସୁନ୍ଦର କହିଲେ ।

ବଲ୍ଲଭଦେବ ଚୁପ୍ ରହିଲେ । ଶ୍ୟାମସୁନ୍ଦର ପୁଣି କହିଲେ, "ଆପଣ କିଛି ମନେ କରିବେ ନାହିଁ । ମୁଁ ରାଜକର୍ମଚାରୀ ମାତ୍ର । ନିୟମ ଅନୁସାରେ କାମ କରିବାକୁ ମୁଁ ରାଜାଙ୍କଠାରେ ଅଙ୍ଗୀକାର କରିଛି ।"

"ଆଚ୍ଛା, ବନ୍ଦୀ ଦୁଇଜଣଙ୍କୁ ଡାକ ଲୁହ କି ଏ ଥଳି ମୋର । ତେଣିକି ଦେଖାଯିବ ।" ବଜ୍ରଭଦେବ କହିଲେ ।

ବାଚ୍ଛୁ ଓ କାବୁଲି ଡକା ହୋଇ ଆସିଲେ । ଶ୍ୟାମସୁନ୍ଦର କହିଲେ, "ଦେଖ, ତମେ ଦୁହେଁ ମିଥ୍ୟାବାଦୀ ବୋଲି ଜଣା ପଡ଼ିଗଲା । ଏ ଟଙ୍କା ଥଳି ଏହି ଭଦ୍ରଲୋକଙ୍କର । ଏ ରାଜାଙ୍କ ଅମାତ୍ୟ । ତମେ ଦୁହେଁ ଦାଶ ଦାଶ ବର୍ଷ ସଶ୍ରମ କାରାଦଣ୍ଡ ଭୋଗିବ ।"

ବାଚ୍ଛୁ ଦୁଃଖରେ କହିଲା, "ଆଉ ଏ ରାଜ୍ୟରେ ଧର୍ମ ରହିବ ? ମୋ ଖାସ୍ ମେହେନତର ଉପାର୍ଜନ । ତାକୁ ଜଣେ ଅମାତ୍ୟ ତାଙ୍କର ବୋଲି କହିଦେଲେ ବୋଲି ତାହା ତାଙ୍କର ହୋଇଯିବ ?"

କାବୁଲି କହିଲା, "ମହାଶୟ ! ତମର ବିଚାର କରିବା ଭଳି ଦକ୍ଷତା ନାହିଁ । ଜଣେ ଅମାତ୍ୟଙ୍କ କଥାରେ ଭୁଲିଗଲ । ସେ ମିଛ କହୁଛନ୍ତି । ଗୋଟାଏ ଅର୍ଥରେ ବାଚ୍ଛୁ ବରଂ ସତ କହୁଛି !"

"ବୋଇଲେ ?" ବଜ୍ରଭଦେବ ପଚାରିଲେ, "ତେବେ କ'ଣ ଏ ଟଙ୍କା ଥଳି ସତରେ ବାଚ୍ଛୁର ?"

"ମାନେ ସେ ଅନ୍ତତଃ ମେହେନତ୍ କରି ଏତକ ଚୋରି କରିଛି । କାରଣ ସେ ମହାଜନ ଧୀରେନ୍ଦ୍ର ମଲ୍ଲିଙ୍କ ଘରୁ ଚୋରି କରିବା ବେଳେ ମୁଁ ଦେଖିଛି !"

ଧୀରେନ୍ଦ୍ର ମଲ୍ଲିଙ୍କ ଘରୁ ଖବର ନେଇ ଜଣାଗଲା ସତରେ ସେ ଟଙ୍କା ଥଳି ତାଙ୍କର । ବାଚ୍ଛୁ ଚୋରି ପାଇଁ ଦଣ୍ଡ ପାଇଲା । ସେତେବେଳକୁ ଅମାତ୍ୟ ବଜ୍ରଭଦେବ ଭଳି ବେଶ ହୋଇଥିବା ବ୍ୟକ୍ତି ନିଜ ଛଦ୍ମ ଦାଢ଼ୀ ଓ ପଗଡ଼ି ଖୋଲି ଦେଲେ । ଦେଖିବା ବେଳକୁ ସେ ସ୍ୱୟଂ ରଜା ।

"ଶ୍ୟାମସୁନ୍ଦର ! ତମ ନ୍ୟାୟପରାୟଣତା ଓ ନିର୍ଭୀକତାରେ ମୁଁ ଅତ୍ୟନ୍ତ ପ୍ରୀତ ।" ରାଜା ଶ୍ୟାମସୁନ୍ଦରଙ୍କୁ ଅମାତ୍ୟ ପଦବରେ ନିଯୁକ୍ତ ଦେଲେ ।





# ଉତ୍ତର ରାମାୟଣ

ପାତାଳରେ ବାସ କରୁଥିବା ସୁମାଳୀ ଯେତେବେଳେ ଶୁଣିଲା ତା' ନାତି ରାବଣ ତପସ୍ୟା କରି ବ୍ରହ୍ମାଙ୍କ ନିକଟରୁ ବର ପାଇଛି, ତା'ର ଆନନ୍ଦ କହିଲେ ନ ସରେ । ସେ ପାତ୍ର ମନ୍ତ୍ରୀ ଧରି ଯାଇ ଲଙ୍କାରେ ପହଞ୍ଚିଲା । ରାବଣକୁ ଏତେଦିନ ପରେ ଦେଖି ଆନନ୍ଦରେ ଆଲିଙ୍ଗନ କରି କହିଲା, "ବତ୍ସ, ଏତେଦିନ ପରେ ମୋର ଇଚ୍ଛା ସଫଳ ହୋଇଛି । ଯେଉଁ ବିଷ୍ଣୁଙ୍କ ଭୟରେ ଆମେ ରାକ୍ଷସବଂଶ ଯାଇ ପାତାଳରେ ପଶିଥିଲୁ ଏବେ ଆଉ ତାଙ୍କ ପ୍ରତି କିଛି ଭୟ ନାହିଁ । ଏହାର ଏକମାତ୍ର କାରଣ ହେଉଛି ଯେ ତୁ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ କରି ଶକ୍ତିଶାଳୀ ହୋଇ ପାରିଛୁ । ପ୍ରକୃତରେ ଏହି ଲଙ୍କା ନଗରୀରେ ଆମେ ରାକ୍ଷସମାନେହିଁ ରାଜତ୍ୱ କରୁଥିଲୁ । ତୋର ବିମାତା ପୁତ୍ର ଭାଇ କୁବେର ଏସବୁ ଅଧିକାର କରି ନେଇଛି । ତୁ ଏବେ ସୁବିଧା ସୁଯୋଗ ଦେଖି କୁବେରକୁ ବୁଝାଇ ଶୁଝାଇ, କିମ୍ବା ଧନର ଲୋଭ ଦେଖାଇ, କିମ୍ବା ବଳ ପ୍ରୟୋଗ କରି ଲଙ୍କା ଦଖଲ କରି ନେ । ତୋହରି ଦ୍ୱାରାହିଁ ରାକ୍ଷସବଂଶ ତାହାର ପୂର୍ବଗୌରବ ଫେରି ପାଇବ ।"

ସବୁକଥା ଶୁଣି ରାବଣ କହିଲା, "ମାତାମହ, ଆପଣଙ୍କ କଥା ନୀତିସମ୍ମତ ନୁହେଁ । କୁବେର ମୋର ଜ୍ୟେଷ୍ଠଭ୍ରାତା, ତେଣୁ ସେ ତ ଆମ-ମାନଙ୍କ ପାଇଁ ପିତାସଦୃଶ । ଆପଣଙ୍କ ମୁହଁରୁ ଏପରି କଥା ବାହାରିବା ଉଚିତ୍ ନୁହେଁ ଓ ମୋର ମଧ୍ୟ ଏପରି କଥା ଶୁଣିବା ଉଚିତ୍ ନୁହେଁ ।"

## ୩. ରାବଣର ଲଙ୍କା ପ୍ରବେଶ




ରାବଣଠାରୁ ଏପରି କଥା ଶୁଣିବା ପରେ ସୁମାଳୀ ନିରୁତ୍ତର ରହିଲା । ତା'ପରେ ସୁମାଳୀର ବିଶ୍ୱସ୍ତ ମନ୍ତ୍ରୀ ପ୍ରହସ୍ତ ରାବଣକୁ ଏକାନ୍ତରେ ଡାକି କହିଲା, "ବତ୍ସ, ତୁମେ ତୁମ ଅଜାଙ୍କୁ ଏପରି କହି ତାଙ୍କ ମନରେ କଷ୍ଟ ଦେଇଛ । ଘର ବନ୍ଧୁମାନଙ୍କ ମଧ୍ୟରେ ଶତ୍ରୁତା ହେବା ଏକ ସ୍ୱାଭାବିକ ଧର୍ମ, ବିଶେଷତଃ ରାଜପରିବାରରେ । ଅଦିତି ଓ ଦିତି ଦୁହେଁ ସହୋଦରା ଭଉଣୀ । ତଥାପି ମଧ୍ୟ ଅଦିତିଙ୍କ ପୁତ୍ରମାନେ ହେଲେ ଆଦିତ୍ୟ ସମେତ ଦେବଗଣ ଏବଂ ଦିତିଙ୍କର ପୁତ୍ର ହେଲେ ଦୈତ୍ୟଗଣ । ବିଷ୍ଣୁ ସମସ୍ତ ଦୈତ୍ୟଙ୍କୁ ତଡ଼ି ଦେଇ ଦେବତାଙ୍କୁ ରାଜ୍ୟ ଦେଲେ । କିନ୍ତୁ ଏକ ସମୟରେ କେବଳ ଲଙ୍କା ନୁହେଁ ସାରା ପୃଥିବୀହିଁ ଦୈତ୍ୟମାନଙ୍କର ଅଧିକାରରେ ଥିଲା । ମୁଁ ତୁମକୁ କୌଣସି ଅନ୍ୟାୟ ବା ଅପରାଧ କରିବାକୁ କହୁନାହିଁ । ପରନ୍ତୁ ତୁମେ ଏପରି କାର୍ଯ୍ୟ କରିବ ଯେଉଁଥିରେ ତୁମ ଅଜାଙ୍କ ପରି ଆମ ରାକ୍ଷସକୁଳର ବୁଢ଼ାମାନେ ମୃତ୍ୟୁ ପୂର୍ବରୁ ଆନନ୍ଦିତ ହେବେ, ତୁମକୁ ଆଶୀର୍ବାଦ କରିବେ । କାରଣ ଆଜିଯାଏ ଆମେ ଅତ୍ୟାଚାରିତ ହୋଇଥିଲୁ । ଏବେ ଏକମାତ୍ର ତୁମେହିଁ ଆମ ସମସ୍ତଙ୍କର ଆଶା ପୂର୍ଣ୍ଣ କରିବ । ତୁମେହିଁ ଆମର ଆଶା ଭରସା । ସେଇକଥା ଭାବ ପୂର୍ବଦୁଃଖ ସବୁ ଭୁଲି ତୁମ ଅଜା ତୁମ୍ ପାଖକୁ କେତେ ଆଶା ନେଇ ଦୌଡ଼ି ଆସିଥିଲେ । ତାଙ୍କୁ ନିରାଶ କରନାହିଁ ବରଂ ସନ୍ତୁଷ୍ଟ କରିବାକୁ ଚେଷ୍ଟା କର ।"

ରାବଣ ବହୁ ସମୟ ଧରି ଏହି ସମସ୍ୟା ଉପରେ ଚିନ୍ତା କରିବାକୁ ଲାଗିଲା । ତା'ପରେ ସେ ପ୍ରହସ୍ତକୁ ଦୂତ ରୂପରେ ଜ୍ୟେଷ୍ଠଭ୍ରାତା କୁବେରଙ୍କ ନିକଟକୁ ପଠାଇଲା । ତାଙ୍କ ହାତରେ ଦେଲା ଚିଠିଟିଏ । ସେଥିରେ ସେ ଲେଖିଥିଲା, "ଅଗ୍ରଜ, ଏବେ ଆପଣ ଯେଉଁ ଲଙ୍କାରେ ରାଜୁତି କରୁଛନ୍ତି ତାହା ଦିନେ ରାକ୍ଷସମାନଙ୍କର ଅଧୀନ ଥିଲା । ଆପଣ ଯଦି ସେମାନଙ୍କ ରାଜ୍ୟ ସେମାନଙ୍କୁ ଫେରାଇ ଦିଅନ୍ତି ତ ସମସ୍ତେ ଆପଣଙ୍କୁ ନ୍ୟାୟପରାୟଣ ଓ ଧାର୍ମିକ ବୋଲି ପ୍ରଶଂସା କରିବେ ।"



କୁବେର ଏ ଚିଠିର ଉତ୍ତରରେ ରାବଣ ପାଖକୁ ଲେଖିଲେ, "ପ୍ରିୟ ଅନୁଜ, ଯେତେ-ବେଳେ ଆମ ପିତା ଏ ରାଜ୍ୟ ମୋତେ ଦେଲେ, ସେତେବେଳେ ଏଠାରେ କେହି ରାଜୁତି କରୁ ନଥିଲେ । ମୁଁ ଏଠାରେ ଯକ୍ଷ-ଗଣଙ୍କ ସହିତ ବାସ କରୁଛି । ମୋର ରାଜ୍ୟ, ବୈଭବ, ସବୁକିଛି କ'ଣ ତୋ'ର ନୁହେଁ ? ତୁ ଏଠାକୁ ଆସି ଆନନ୍ଦରେ ବାସ କରିବୁ । ଆମେ ତ ଏକହିଁ ପିତାଙ୍କର ସନ୍ତାନ । ଏପରି ସ୍ଥଳେ ଆମ ଦୁଇଜଣଙ୍କ ମଧ୍ୟରେ ଭେଦଭାବର ପ୍ରଶ୍ନ କୁଆଡୁ ଉଠୁଛି ?"

ଏ ଚିଠିଟି ରାବଣ ପାଖକୁ ପଠାଇ ଦେଇ କୁବେର ନିଜ ପିତାଙ୍କୁ ଭେଟି ସବୁକଥା ଜଣାଇଲେ । ବିଶ୍ରବା କୁବେରଙ୍କୁ କହିଲେ, "ବତ୍ସ, ଏକଥା ରାବଣ ମୋତେ ଆଗରୁ କହିଥିଲା । ମୁଁ ଦେଖିଲି ସେ ବର ପାଇ ଖୁବ୍ ଗର୍ବୀ ହୋଇ ଯାଇଛି । ତେଣୁ ଅସୁନ୍ଦର ପରିସ୍ଥିତି ସୃଷ୍ଟି ହେବା ପୂର୍ବରୁହିଁ ତୁ ଲଙ୍କା ଛାଡି ହିମାଳୟକୁ ଯାଇ, ସେଠାରେ ଯକ୍ଷଗଣଙ୍କ ସହ ବସବାସ କର । ହିମାଳୟରେ ପବିତ୍ର ଗଙ୍ଗା ପ୍ରବାହିତ ହେଉଛି । ନିକଟରେ ମାନ-ସରୋବର; ସେଥିରେ ସୁବର୍ଣ୍ଣ କମଳ ଓ ନୀଳ କମଳ ଫୁଟେ । ସେଠାକୁ ପ୍ରତିଦିନ ଦେବତା, ଗନ୍ଧର୍ବ ଓ କିନ୍ନରମାନେ ଆସି ବିହାର କରନ୍ତି । ଏପରି ଏକ ପବିତ୍ର ସ୍ଥାନରେ ତୋର ପରିବାର-ବର୍ଗ ଓ ଅନୁଚରବର୍ଗଙ୍କୁ ନେଇ ବସବାସ କର । ଅସୁରୀ ଗର୍ଭଜାତ ରାବଣ ସହିତ କୌଣସି ପ୍ରକାର ଦ୍ୱନ୍ଦ୍ୱ ନ କରିବାହିଁ ଭଲ । ତା' ଦେହରେ ଅଛି ଅସୁର ରକ୍ତ । ମୋର ପୁଅ ହେଲେ କ'ଣ ହେବ ? ଦିନେ ନା ଦିନେ ତା'ର ଆସୁରୀ ଶକ୍ତି ପ୍ରବଳ ହେବ ଓ ତୁ ଅସହାୟ ଭାବରେ ତା'ର ଶିକାର ହେବୁ । ଏବେ ରାବଣ ବର ପ୍ରଭାବରେ ଶକ୍ତିଶାଳୀ ହୋଇଛି ପୁଣି ତା'ର ଅଜାଘରର ବଂଶ ସମସ୍ତ ରାକ୍ଷସ ତା' ସହିତ ଯୋଗ ଦେଲେଣି । ସେ କ୍ଷେତ୍ରରେ ତା'ଠାରୁ ଦୟା, ସ୍ନେହ, ନ୍ୟାୟ ବା ବିବେକବୋଧ ଆଶା କରିବା ବୃଥା ।"

କୁବେର ତାଙ୍କ ପିତାଙ୍କ ପରାମର୍ଶକୁ ଗ୍ରହଣ କଲେ । ସେ ନିଜର ପରିବାର ଓ



ସହଚରଗଣଙ୍କୁ ସେଥିରେ ନେଇ କୈଳାସକୁ ଚାଲିଗଲେ ।

ଇତିମଧ୍ୟରେ ପ୍ରହସ୍ତ ଯାଇ ରାବଣଙ୍କୁ କହିଲା, "ରାବଣ, ମୁଁ ଏକ ଶୁଭ ସମାଚାର ନେଇ ତୁମ ପାଖକୁ ଆସିଛି । ଲଙ୍କାରାଜ୍ୟ ଖାଲି ହୋଇ ଯାଇଛି । କୁବେର ଲଙ୍କା ଛାଡ଼ି ଚାଲିଯାଇଛି । ତୁମେ ଯାଇ ସେଠାରେ ଶୀଘ୍ର ରାଜତ୍ୱ କର ।"

ଏ ସମ୍ବାଦ ପ୍ରାପ୍ତ ହେବା ପରେ ରାବଣ ନିଜର ପରିବାର ବର୍ଗ ଓ ସହଚରଗଣଙ୍କୁ ସାଙ୍ଗରେ ଧରି ଲଙ୍କାରେ ପହଞ୍ଚିଲା ଓ ମହା ସମାରୋହରେ ତା'ର ରାଜା ଭାବରେ ଅଭିଷେକ ହେଲା । ଅନ୍ୟାନ୍ୟ ରାକ୍ଷସଗଣ ମଧ୍ୟ ଅତି ଆନନ୍ଦିତ ହେଲେ ଓ କ୍ରମେ ଅଧିକରୁ ଅଧିକ ରାକ୍ଷସଗଣ ଆସି ଲଙ୍କାରେ ବସବାସ କଲେ । ରାଜା ହେବା ପରେ ରାବଣ ନିଜର ଭଉଣୀ ସୂର୍ପଣଖାକୁ କାଳକେୟ ବଂଶର ବିଦ୍ୟୁଜ୍ଜିହ୍ୱା ସହିତ ବିବାହ ଦେଲା ।

କିଛିଦିନ ପରେ ଥରେ ରାବଣ ବଣକୁ ଶୀକାର କରିବାକୁ ଯାଇଥାଏ । ସେଠାରେ ବନ ମଧ୍ୟରେ ସେ ଦେଖିଲା ଜଣେ ପ୍ରୌଢ଼ ବ୍ୟକ୍ତି ଓ ତାଙ୍କ ସହିତ ଜଣେ ସୁନ୍ଦରୀ କନ୍ୟା । ସେ ତତ୍‌କ୍ଷଣାତ୍ ପଚାରିଲା, "ଆପଣ କିଏ ? ଆଉ ଏଡ଼େ ସୁନ୍ଦରୀ ଯୁବତୀ ଝିଅକୁ ଧରି ଏ ବଣରେ କାହିଁକି ବୁଲୁଛନ୍ତି ?"

ଉକ୍ତ ବ୍ୟକ୍ତିଟି ଉତ୍ତର ଦେଲେ, "ଭଦ୍ର, ମୁଁ ହେଉଛି ଦିତିଙ୍କର ପୁଅ ମୟ ଦାନବ । ତମେ ହେମା ନାମକ ଅପ୍‌ସରାର ନାମ ଶୁଣିଥିବ । ଦେବତାମାନେ ସେହି ହେମା ସହିତ ମୋର ବିବାହ ଦେଇଥିଲେ । ହେମା ଦୁଇଟି ପୁତ୍ର ସନ୍ତାନ ଓ ଗୋଟିଏ କନ୍ୟା ସନ୍ତାନ ଜନ୍ମ ଦେଇ ଆଜିକୁ ତେରଦବର୍ଷ ହେବ ମୋତେ ଛାଡ଼ି ସ୍ୱର୍ଗକୁ ଚାଲିଯାଇଛି । ଦୁଇପୁତ୍ର ହେଲେ ମାୟାବୀ ଓ ଦୁନ୍ଦୁଭି । ଏଇ କନ୍ୟାଟିର ନାମ ମନ୍ଦୋଦରୀ । ଏହା ପାଇଁ ଗୋଟିଏ ଭଲ ବରପାତ୍ର ଖୋଜି ଖୋଜି ମୁଁ ଭ୍ରମଣ କରୁଛି । ମୁଁ ତ ମୋ ବିଷୟରେ ସବୁ କହିଲି । ଏବେ ତୁମେ ତୁମର ପରିଚୟ ମୋତେ ଦିଅ ।"

"ମୁଁ ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବସଙ୍କର ପୁତ୍ର । ମୋର ନାମ ଦଶଗ୍ରୀବ ।" ରାବଣ ନିଜର ପରିଚୟ ଦେଲା ।

ରାବଣକୁ ଋଷିବଂଶସମ୍ଭୂତ ଜାଣି ମୟ ଅତ୍ୟନ୍ତ ପ୍ରସନ୍ନ ହୋଇ ନିଜ କନ୍ୟାକୁ ତାକୁ ପ୍ରଦାନ କରିବାର ପ୍ରସ୍ତାବ ଦେଲା । ରାବଣ ସେ ପ୍ରସ୍ତାବକୁ ଆନନ୍ଦରେ ସ୍ୱୀକାର କଲା । ମନ୍ଦୋଦରୀ ସହିତ ରାବଣର ବିବାହ ସମ୍ପନ୍ନ ହେଲା । ବିବାହ ପରେ ମୟ ରାବଣକୁ ଏକ ମହାଶକ୍ତି ପ୍ରଦାନ କଲା, ଯାହା ସେ ଅନେକ ବର୍ଷର ତପସ୍ୟା ଫଳରେ ଲାଭ କରିଥିଲା । ସେହି ମହାଶକ୍ତିକୁ ପରବର୍ତ୍ତୀ ସମୟରେ ରାବଣ ଲକ୍ଷ୍ମଣଙ୍କ ଉପରେ ପ୍ରୟୋଗ କରି ତାଙ୍କୁ ମୂର୍ଚ୍ଛିତ କରାଇଥିଲା ।

ରାବଣ ନିଜର ବିବାହ ପରେ ତା'ର ଦୁଇ ସାନ ଭାଇଙ୍କର ବିବାହ ଦେଲା । କୁମ୍ଭକର୍ଣ୍ଣର ବିବାହ ବୈରୋଚନର ନାତୁଣୀ ବଜ୍ରଜ୍ୱାଲା ସହିତ ଓ ବିଭୀଷଣର ବିବାହ ଶୈଳୁଷ ନାମକ ଗନ୍ଧର୍ବର କନ୍ୟା ସରମା ସହିତ ମହା ସମାରୋହରେ ସମ୍ପନ୍ନ ହେଲା ।

ତିନି ଭାଇ ବିବାହ ପରେ ଆନନ୍ଦରେ କିଛିକାଳ କଟାଇଲେ । କିଛିଦିନ ପରେ ରାବଣର ପ୍ରଥମ ପୁତ୍ର ମେଘନାଦ ଜନ୍ମ ହେଲା । ସେ ଜନ୍ମ ହେବା ମାତ୍ରେ ମେଘପରି ଗର୍ଜ୍ଜନ କରିବାରୁ ତା'ର ନାମ ସେପରି ଦିଆ ଯାଇଥିଲା । ସେ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରି




ବିଜୟ ଲାଭ କରିଥିବାରୁ ତା'ର ଅନ୍ୟ ନାମ ଥିଲା ଇନ୍ଦ୍ରଜିତ୍ । ପିତାମାତାଙ୍କର ସେ ଥିଲା ସର୍ବାଧିକ ପ୍ରିୟ ପୁତ୍ର । ରାମାୟଣ ଯୁଦ୍ଧରେ ସେ ଲକ୍ଷ୍ମଣଙ୍କ ଶରରେ ପ୍ରାଣ ଦେଇଥିଲା ।

ଦିନେ ରାବଣର ସଭା ହେଉଥାଏ, କୁମ୍ଭକର୍ଣ୍ଣ ବଡ଼ ଗୋଟାଏ ହାଇ ମାରି କହିଲା, "ଭାଇ, ମୋତେ ବହୁତ ନିଦ ମାଡୁଛି । ଦୟା କରି ମୋର ଶୋଇବାର ବ୍ୟବସ୍ଥା କରିଦିଅ ।"

ବ୍ରହ୍ମାଙ୍କ ବରଦାନ ଯୋଗୁ ତା'କୁ ଏପରି ନିଦ୍ରା ଆକ୍ରମଣ କଲା । ରାବଣ ତା' ପାଇଁ ଏକ ଶୟନ କକ୍ଷ ତିଆରି କଲା, ତାହା ଶିଳ୍ପ ଗୁଣରେ ପୂର୍ଣ୍ଣ ଥିଲା । ସ୍ଫଟିକ, ହାତୀଦାନ୍ତ ଓ ନାନାବିଧ ରତ୍ନରେ ନାନା କାରୁକାର୍ଯ୍ୟ ଓ



ତୋରଣ ସବୁ ଥାଏ । ତା'ପରେ ଶଯ୍ୟା ତ ଆହୁରି ସୁନ୍ଦର ଥିଲା । ସେହି ଶଯ୍ୟାରେ ସେ ଆରାମରେ ଦୀର୍ଘଦିନ ଧରି ଶୋଇଥାଏ ।

କୁମ୍ଭକର୍ଣ୍ଣ ଶୋଇଯିବା ପରେ, ରାବଣ ନିଜର ବୁଦ୍ଧି ଓ ଶକ୍ତି ପ୍ରୟୋଗ କରି ନାନା ରାଜ୍ୟ ଜୟ କଲା । ଋଷି, ଦେବତା, ଗନ୍ଧର୍ବ ସମସ୍ତଙ୍କ ଉପରେ ଅତ୍ୟାଚାର କଲା । ସ୍ୱର୍ଗର ନନ୍ଦନକାନନ ଆଦି ଧ୍ୱଂସ କଲା । ସାନ ଭାଇର ଏଇ ସବୁ ଅକୀର୍ତ୍ତି ଶୁଣି କୁବେରଙ୍କ ମନ ବହୁତ ଦୁଃଖ ହେଲା । ରାବଣକୁ ବୁଝାଇବା ପାଇଁ କୁବେର ଚିଠି ଦେଇ ଜଣେ ଦୂତକୁ ପଠାଇଲେ । ବିଭୀଷଣ ତା' ସହିତ ବହୁତ ଭଲ ବ୍ୟବହାର କଲା ଓ ତା'କୁ ରାବଣ ନିକଟକୁ ନେଇଗଲେ । ରାବଣର ରାଜସଭାରେ କୁବେରଙ୍କ ପତ୍ରପାଠ କରାଗଲା ।

"କଲ୍ୟାଣୀୟ ଦଶଗ୍ରୀବ, ତୁ ବ୍ରହ୍ମାଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ବହୁ ଯଶପ୍ରାପ୍ତ କରିଛୁ, ତାହା ଅତି ଆନନ୍ଦର ବିଷୟ । କିନ୍ତୁ ସ୍ୱର୍ଗ ଆକ୍ରମଣ କରି ନନ୍ଦନକାନନକୁ ବିଧ୍ୱସ୍ତ କରିବା, ଋଷିମୁନିମାନଙ୍କ ଉପରେ ଆକ୍ରମଣ କରିବା, ଏସବୁ ଆମ ବଂଶରେ କଳଙ୍କ ହୋଇ ରହିଯିବ । ଋଷିମୁନିଙ୍କର ଅଭିଶାପ ଓ ଦେବତାମାନଙ୍କର ଅସନ୍ତୁଷ୍ଟି ନେଇ ତୁ କେତେଦିନ ଶକ୍ତିଶାଳୀ ହୋଇ ରହିବୁ ? ଶୁଣିଲି ଦେବତାମାନେ ତୋତେ ବଧ କରିବା ପାଇଁ ସବୁ ପ୍ରକାର ଚେଷ୍ଟା କରୁଛନ୍ତି । ତେଣୁ ଅଯଥା ସେସବୁ ମାର୍ଗ ଛାଡି ଜୀବନରେ ସତ୍-ମାର୍ଗକୁ ଅନୁସରଣ କର; ତୋର ତଥା ବଂଶର ମଙ୍ଗଳ ହେବ । ମୋ ଜୀବନରେ ଏପରି ଏକ ଘଟଣା ଘଟିଥିଲା ଯେ ଥରେ ତପସ୍ୟା ପରେ ଶିବ ପାର୍ବତୀଙ୍କ ଦର୍ଶନ ପାଇଲି ଓ ପାର୍ବତୀଙ୍କ ରୂପରେ ମୁଗ୍ଧ ହୋଇ ବାମ ଚକ୍ଷୁର ଦୃଷ୍ଟି ତାଙ୍କ ଉପରେ କିଛିକ୍ଷଣ ପାଇଁ ନିବଦ୍ଧ କଲି । ଆଉ ତା'ପରେ ଦେବୀ ପାର୍ବତୀଙ୍କ ରୂପ ଅଗ୍ନିରେ ମୋର ସେହି ଆଖି ଜଳିଗଲା ଓ ପୀତବର୍ଣ୍ଣ ଧାରଣ କଲା । ଶିବ ମୋତେ ସେହି ଦିନଠାରୁ ନାମ ଦେଲେ "ଏକାକ୍ଷୀ ପିଙ୍ଗଳ" ତଥାପି ସେମାନେ ମୋ ଉପରେ ଅସନ୍ତୁଷ୍ଟ ନୁହନ୍ତି । ସେଠାରୁ ଫେରି ମୁଁ ତୋର

କାର୍ତ୍ତିକଳାପ କ୍ଷୟ ହୃଷିଲ, ଆମର ବଂଶ ମହାନ୍ । ତୁ ଏସବୁ କାର୍ଯ୍ୟ ଛାଡ଼ ଦେ ଓ ସତ୍ୟ ମାର୍ଗର ଅନୁସରଣ କର ।"

କୁବେରଙ୍କର ଏ ପତ୍ର ପଢ଼ ରାବଣ ରାଗରେ ଅଗ୍ନିଶର୍ମା ହୋଇଯାଇ କହିଲ, "ଆରେ ଦୂତ, ତୁ ମୂର୍ଖ ଓ ତୋତେ ଯେ ଏଇ ବାର୍ତ୍ତା ଦେଇ ପଠାଇଛି ସେ ଆହୁରି ଗଜ ମୂର୍ଖ । ରହ ମୁଁ ଦୁଇଜଣଙ୍କୁ ପାଠ ପଢ଼ଉଛି । ଆଜି ପର୍ଯ୍ୟନ୍ତ ମୁଁ ତାଙ୍କୁ ଭାବଥିଲି ଯେ ବଡ଼ଭାଇ ପିତା ସମାନ, କିନ୍ତୁ ଏବେ ଜାଣୁଛି ତାଙ୍କର ଗର୍ବର ସୀମା ନାହିଁ । ମୋ ମନରେ ଇଚ୍ଛା ଅଛି ତ୍ରିଭୁବନ ବିଜୟ କରିବା ପାଇଁ । ଆଉ ମୁଁ ସେହି ମୂର୍ଖର ଉପଦେଶ ଶୁଣିବି ? ଆରେ, କିଏ ଅଛରେ, ଏହି ଦୂତଟାକୁ ମାରି ଖାଇଦିଅ ।" ଏତିକ କହି ରାବଣ ଅଟ୍ଟହାସ କଲା । ଅଚିରେ ତା'ର ଆଦେଶ କାର୍ଯ୍ୟକାରୀ ହେଲା ।

ତା'ପରେ ରାବଣ ନିଜର ପାତ୍ରମନ୍ତ୍ରୀ ଓ ସୈନ୍ୟସାମନ୍ତ ଧରି ପ୍ରଥମେ ହିମାଳୟ ଅଭି-ଯାନରେ ଗଲା । ଉଦ୍ଦେଶ୍ୟ ପ୍ରଥମେ କୁବେରଙ୍କ ଯକ୍ଷପୁରୀ ଆକ୍ରମଣ କରି ଧ୍ୱଂସ କରିବା । ବହୁଦିନ ଧରି ନଦୀ, ପାହାଡ଼ ଅତିକ୍ରମ କରି ଯାଇ ଯାଇ ଶେଷରେ କୈଳାସରେ ପହଞ୍ଚିଲା । ଯକ୍ଷମାନେ ଆଗରୁ ସବୁ ଶୁଣିଥିଲେ । ସେମାନେ ଦୂରରୁ ଦେଖି ଜାଣିନେଲେ ଯେ ଏହି ବ୍ୟକ୍ତିଟି ନିଶ୍ଚୟ କୁବେରଙ୍କ ସାନ



ଭାଇ । ସେମାନେ ଏକଥା ଯାଇ କୁବେରଙ୍କୁ ଜଣାଇଲେ । କୁବେର ବଡ଼ ଦୁଃଖର ସହିତ ନିଜର ସୈନ୍ୟସଜ୍ଜା କଲେ । କିଛି ସମୟ ପରେ ଦୁଇଦଳଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ରାବଣ ଯକ୍ଷଗଣଙ୍କୁ ଯୁଦ୍ଧରେ ବଧ କରିବାକୁ ଲାଗିଲା । କୁବେର ଆହୁରି ଯକ୍ଷସେନା ପଠାଇଲେ । କାରଣ ଅଳକା-ପୁରୀକୁ ଶତ୍ରୁମାନଙ୍କ ଆକ୍ରମଣରୁ ରକ୍ଷା କରିବାକୁ ସେ ଚାହୁଁଥିଲେ । ଯକ୍ଷମାନଙ୍କ ମଧ୍ୟରେ ସଂଯୋଗକଣ୍ଟକ ନାମକ ଜଣେ ବୀର ଯକ୍ଷ ଥିଲେ । ସେ ବାଣ ପ୍ରୟୋଗ କରି ମାରୀଚକୁ ପାହାଡ଼ରୁ ତଳକୁ ଟକାଇ ଦେଲେ । କିନ୍ତୁ କିଛି ସମୟ ପରେ ମାରୀଚ ପୁଣି ପାହାଡ଼

ଉପରକୁ ଉଠି ଆସିଲା, ଏସବୁ ଶକ୍ତିଶାଳୀ ଅସୁରମାନଙ୍କୁ ଦେଖି ସବୁ ବୀର ଯକ୍ଷମାନେ ଭୟରେ ପଳାୟନ କଲେ । ଅଳକାପୁରୀର ପ୍ରଥମ ତୋରଣ ପାଖରେ ଥିବା ଦ୍ୱାରପାଳକୁ ରାବଣ ମାରି ପକାଇଲା ଓ ଦ୍ୱାର ତୋରଣ ସବୁ ଭାଙ୍ଗି ପକାଇଲା । ଏସବୁ ଦେଖି ଅନ୍ୟ ଯକ୍ଷମାନେ ପ୍ରାଣ ଭୟରେ ସେଠାରୁ ପଳାଇ ଯାଇ ଜଙ୍ଗଲ ଓ ପର୍ବତ ଗୁମ୍ଫାମାନଙ୍କରେ ଲୁଚି ରହିଲେ ।

ତା'ପରେ କୁବେର ଯକ୍ଷ ସୈନ୍ୟମାନଙ୍କର ଏ ଦୁର୍ଦ୍ଦଶା ଦେଖି ମଣିଭଦ୍ର ନାମକ ଏକ ବୀର ଯୋଦ୍ଧା ଯକ୍ଷଙ୍କୁ ଯୁଦ୍ଧକୁ ପଠାଇଲେ । ସେ ନିଜ ସହିତ ହଜାର ହଜାର ଯକ୍ଷସୈନ୍ୟ ନେଇ ଯାଇଥିଲେ । ସେଠାରେ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ବହୁ ସମୟ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ରାକ୍ଷସମାନେ ମାୟା ଯୁଦ୍ଧ ଜାଣି-ଥିବାରୁ, ଯକ୍ଷମାନେ ବହୁତ ଅସୁବିଧାରେ ପଡୁଥା'ନ୍ତି । ମହୋଦର ଓ ପ୍ରହସ୍ତ ବହୁତ ଯକ୍ଷ ବଧ କଲେ । ମାରୀଚ ମଧ୍ୟ ଅନେକ ଯକ୍ଷ ବଧ କଲା ।

ତଥାପି ମଧ୍ୟ ମଣିଭଦ୍ର ସାହସର ସହିତ ଯୁଦ୍ଧ କରୁଥା'ନ୍ତି । ଇତିମଧ୍ୟରେ ଧୂମ୍ରାକ୍ଷ ନାମକ ଏକ ରାକ୍ଷସ ମଣିଭଦ୍ରଙ୍କ ଉପରେ ପ୍ରବଳ ପରାକ୍ରମର ସହିତ ମୂଷଳ ପ୍ରହାର କଲା । ସେଥିରେ ମଣିଭଦ୍ର ବିଚଳିତ ନ ହୋଇ ତା' ଉପରେ ଭୀଷଣ ଭାବରେ ଏକ ଗଦା ପ୍ରହାର କଲେ । ସେଥିରେ ଧୂମ୍ରାକ୍ଷ ଧୂଳିଶାୟୀ ହେଲା । ଏସବୁ ଦେଖି ରାବଣର କ୍ରୋଧ ଦ୍ୱିଗୁଣିତ ହେଲା । ସେ ନିଜେ ଆସି ମଣିଭଦ୍ରଙ୍କ ସହିତ ଯୁଦ୍ଧ କଲା । ଏକ ବିରାଟ ଶକ୍ତି ସେ ମଣିଭଦ୍ରଙ୍କ ଉପରେ ପ୍ରହାର କଲା । ସେଥିରେ ମଣିଭଦ୍ରଙ୍କର ବିଶେଷ କ୍ଷତି ହୋଇ ନଥିଲା । କିନ୍ତୁ ତାଙ୍କର ମୁକୁଟ ଭାଙ୍ଗି ପଡ଼ି ଗୋଟିଏ ପଟକୁ ଢଳି ପଡ଼ିଥିଲା । ସେଥିପାଇଁ ସେହିଦିନଠାରୁ ତାଙ୍କ ନାମ ଥିଲା "ପାର୍ଶ୍ୱମୌଳି ।"





# କଲି

ଶିକ୍ଷା ସମାପ୍ତ କରି ଅଜୟ ମିର୍ଜାପୁର ଜମିଦାରଙ୍କ କଚେରିରେ କାମ କଲା । ବିବାହ ଆଗରୁ ହୋଇସାରିଥିଲା । ତେଣୁ ସେ ଶ୍ୱଶୁର ଘରକୁ ଯାଇ ପତ୍ନୀ ସୁଜାତାକୁ ନେଇ ଆସିଲା ଓ ଘରଟିଏ ଭଡ଼ା କରି ରହିଲା । ସୁଜାତାର ଗ୍ରାମରେ ଜନ୍ମ ଓ ମଣିଷ ହୋଇଛି ମଧ୍ୟ ସେଇଠି । ତେଣୁ ସହରରେ ଚଳିବାକୁ ଟିକିଏ ତାକୁ କଷ୍ଟ ହେଲା । ସେ ରନ୍ଧାରନ୍ଧି କରି ସ୍ୱାମୀକୁ ଠିକ୍ ସମୟରେ ଦେଇ ପାରେନା । ଦିନେ ଅଜୟ ରାଗି ଯାଇ କହିଲା, "ତମେ ରାନ୍ଧିବାକୁ ଏତେ ସମୟ କାହିଁକି ନିଅ ? ଯାହାହେଉ କାଲିଠାରୁ ମୋତେ ଯେମିତି ହେଲେ ଦଶଟା ପୂର୍ବରୁ ଖାଇବାକୁ ଦେବ ।"

ସେଦିନ ରାତିରେ ସୁଜାତାକୁ ଜମା ନିଦ ହେଲାନାହିଁ । ଅଧରାତି ହୋଇଯିବା ପରେ ସେ ବିଛଣାରୁ ଉଠି ପଡ଼ି ରନ୍ଧା ରନ୍ଧି ଆରମ୍ଭ କଲା । ଦିନ ଆଠଟା ବେଳକୁ ରନ୍ଧା ଶେଷ । ଅଜୟ ସେଦିନ କିଛି ସମୟ ପୂର୍ବରୁ ଖାଇ ମହା ଆନନ୍ଦରେ କଚେରିକୁ ଗଲା । ବାଟରେ ଦେଖିଲା ଜଣେ ଲୋକ ତା' ଆଡ଼କୁ ଆସୁଛି । ସେ ମଧ୍ୟ ଟିକିଏ ଅଟକି ଗଲା । ଅଜଣା ବ୍ୟକ୍ତିଟି ଅଜୟର ହାତ ଧରି କହିଲା, "ଆରେ, ଆଜି ଏତେଦିନ ପରେ ତୋ ସହିତ ଦେଖା ହେଉଛି !"

ଅଜୟ କହିଲା, "ଭାଇ, ମୁଁ ତ ଆପଣଙ୍କୁ ଚିହ୍ନି ନାହିଁ ।"

ଅଚିହ୍ନା ବ୍ୟକ୍ତିଟି ହସି ହସି କହିଲା, "ସୁରେଶ ! ମୁଁ ତୋ ବିବାହ ଉତ୍ସବରେ ଯୋଗ ଦେଇ ନଥିଲି ବୋଲି ତୁ ଏତେ ରାଗିଛୁ ?"

ଅଜୟ ଆଶ୍ଚର୍ଯ୍ୟ ହୋଇ କହିଲା, "ମୋ ନାମ ତ ଅଜୟ । ମୋତେ ଏବେ ଶୀଘ୍ର ଅଫିସ୍ ଯିବାର ଅଛି ।" ତା'ପରେ ସେ ତା' ହାତ ସେହି ବ୍ୟକ୍ତିର ହାତ ମୁଠାରୁ ଛଡ଼ାଇ

ସୁରେନ୍ଦ୍ର,



ନେବାକୁ ଚେଷ୍ଟା କଲା । କିନ୍ତୁ ସେ ତ ଛାଡ଼ିବା ବ୍ୟକ୍ତି ନୁହେଁ । ସେ ହାତକୁ ଆହୁରି ଜୋରରେ ଧରି କହିଲା, "ହଉ ହେଲା ତୁ ବୀରେଶ ନୁହଁ । ତେବେ ତୋ ଡାହାଣ ହାତ ଉପରେ ଯେଉଁ କଳାଜାଇ ଥିଲା ସେ କଥା କ'ଣ ମିଛ ?"

ଅଜୟ ଚିଡ଼ି ଯାଇ ତା' ହାତଟା ଟାଣି ଆଣି ଦେଖାଇଲା ଓ କହିଲା, "ଦେଖନ୍ତୁ ମହାଶୟ ସେପରି କୌଣସି କଳାଜାଇ ମୋର ନାହିଁ । ବରଂ ବାମହାତ କହୁଣୀ ପାଖରେ ଅଛି ।"

ଏକଥା ଶୁଣି ଅଚିହ୍ନା ବ୍ୟକ୍ତିଟି କହିଲା, "କ୍ଷମା କର ଭାଇ, ମୁଁ ଆପଣଙ୍କୁ ମୋର ବନ୍ଧୁ ବୀରେଶ ବୋଲି ଭାବିଥିଲି । ସେ ଠିକ୍ ଆପଣଙ୍କ ପରି ଦେଖିବାକୁ ।"

ସେଦିନ ସନ୍ଧ୍ୟାରେ ଯେତେବେଳେ ଅଜୟ ଅଫିସରୁ ଘରକୁ ଫେରିଲା, ସୁଜାତା କହିଲା, "ଯାହାହେଉ, ଆଜି ତ ଠିକ୍ ସମୟରେ କଚେରୀକୁ ଗଲ !"

"ନାହିଁ ସୁଜାତା, ଆଜି ମଧ୍ୟ ଡେରିରେ ଗଲି । ଗଳିମୁଣ୍ଡରେ ଜଣେ ଅଚିହ୍ନା ଲୋକ ମୋର ସାଙ୍ଗ ବୋଲି କହି ମୋତେ ଅଟକାଇ ଦେଲା ।" ଅଜୟ ସକାଳର ସମସ୍ତ ବୃତ୍ତାନ୍ତ ସୁଜାତାକୁ କହିଲା ।

ସୁଜାତା ଚମକି ଉଠି କହିଲା, "ଆରେ, ମୁଁ ତ ଭୁଲି ଯାଇଛି । ସକାଳଠାରୁ ବୀରେଶ ବୋଲି ତୁମର ଜଣେ ବନ୍ଧୁ ଆସି ଏଇଠି ଥିଲେ ।"

"ବୀରେଶ ? ବୀରେଶ ନାମରେ ମୋର କୌଣସି ବନ୍ଧୁ କେବେ ବି ନଥିଲା । ଚାଲ ତ ଦେଖିବା ସେ କିଏ ?" ଅଜୟ କହିଲା ।

"ସେଇ ଘରେ ସେ ତାର ସୁଟକେଶ ନେଇ ରହିଲା । ଏବେ କିଛି ସମୟ ପୂର୍ବରୁ ବଜାରରୁ ଆସୁଛି କହି ଚାଲିଗଲା ।" ସୁଜାତା କହିଲା ।

ଅଜୟ ଘର ଭିତରେ ଦେଖିଲା ଗୋଟାଏ ଭଙ୍ଗା ସୁଟକେଶ୍ ଭିତରେ ଦୁଇ ଚାରିଟା ଭଙ୍ଗା ଇଟା ଭର୍ତ୍ତି ହୋଇଛି ।

ତା'ପରେ ସେମାନେ ଘରର ଜିନିଷପତ୍ର ଦେଖିଲେ । ଟ୍ରଙ୍କ ଭିତରୁ ଚାରିଶହ ଟଙ୍କା ଓ ସୁନାଚୁଡ଼ି ଦୁଇପଟ ଚୋରି ହୋଇ ଯାଇଛି । ଅଜୟ ରାଗି କରି କହିଲା, "ତମେ ଗାଁରୁ ଆସିଛ । ଗାଁଉଁଲି ବୋକାମୀର ସୀମା ଥାଏ ।"

ଜଣେ ଅଚିହ୍ନା ଲୋକକୁ ଖୁଆଇ ପିଆଇ ଘରେ ଶୁଆଇଛ ? ଚୋରୀ ହେବ ନାହିଁ ?"

"ମୁଁ କ'ଣ ଜାଣିଥିଲି ସେ ଚୋର ? ସେ ତୁମ ନାମ କହି ପରିଚୟ ଦେଲା ଓ କହିଲା ତୁମ ବାମହାତ କହୁଣୀରେ କଳାଜାଇ ଅଛି ଓ ତୁମେ ନୀଳ ପଥରର ମୁଦି ପିନ୍ଧିଛ । ମୁଁ ବା ଅବିଶ୍ୱାସ କରନ୍ତି କିମିତି ?" ସୁଜାତା କହିଲା ।

"ଓହୋ, ଏବେ ଜଣାଗଲା । ଯିଏ ସକାଳେ ମୋ ହାତଧରି ବନ୍ଧୁ ବୋଲି କହୁଥିଲା ସେହିଁ ମୋର ମୁଦି ଓ କଳାଜାଇ ବିଷୟରେ କହି ଠକାଇଛି ।" ଅଜୟ କହିଲା ।

ତା'ପରେ ଦୁହିଁଙ୍କ ମଧ୍ୟରେ ଭୀଷଣ ଝଗଡ଼ା ହେଲା । ଦୁହେଁ ରାତିରେ ନ ଖାଇ ଶୋଇ ପଡ଼ିଲେ । ପରଦିନ ସକାଳୁ ଉଠି ଅଜୟ ବୀରପୁର ଯାଇ ସୁଜାତାର ସମ୍ପର୍କୀୟ କାକା ନାରାୟଣଙ୍କୁ ଧରି ଫେରିଲା । ସେହିଁ ଏ ଦୁହିଁଙ୍କର ବାହାଘର ଠିକ୍ କରିଥିଲେ । ତାଙ୍କର କାମ ଥିଲା ବାହାଘର ଠିକ୍ କରିବା ଓ କିଛି ଟଙ୍କା ଦୁଇତରଫରୁ ପାଇବା ।

ଦୁହେଁ ଘରେ ପହଞ୍ଚିବା ପରେ ଖିଆପିଆ ସରିଲା । ପରେ ଏକାଠି ତିନିଜଣ ବସି ଆଲୋଚନା କଲେ । ପ୍ରଥମେ ଅଜୟ କହିଲା, "ଆପଣ ସୁଜାତା ସହିତ ମୋତେ ବିବାହ ଦେବାକୁ ଯାଇ ଏକାଧିକ ମିଥ୍ୟା କଥା କହିଛନ୍ତି । ଆପଣହିଁ କହିଥିଲେ କନ୍ୟାଟି ବୁଦ୍ଧିମତୀ, ବିନୟଶୀଳ ଓ କାମିକା । କାମ ଏପରି କରେ ଯେ ସବୁଦିନେ ମୋର ଅଫିସ୍





ଡେଗ ହୁଏ । ବୁଦ୍ଧି ଏତେ ଯେ ଜଣେ ଚୋରକୁ ଦିନ ଦ୍ୱିପ୍ରହରରେ ଘରେ ଖାଇବାକୁ ଦେଇ ଶୁଆଇ ଥିଲା ଭିତର ଘରେ । ଆଉ ବିନୟଶୀଳ? ମୋ ସହିତ କାଲିଠାରୁ ଝଗଡ଼ା କରୁଛି ।”

ସୁଜାତା ଅଧାକାନ୍ଦ ଅବସ୍ଥାରେ ନାରାୟଣଙ୍କୁ ସବୁ କଥା ଶୁଣାଇଲା । ଶେଷରେ ନାରାୟଣ କହିଲେ, “ଛାଡ଼, ଯାହା ହୋଇଯାଇଛି ଯାଇଛି । ସେଥିରେ ତୁମ ଦୁଇଜଣଙ୍କ ଦୋଷ ନାହିଁ । ଏକଥା ଘଟିଛି ଯେହେତୁ କେହି ମୁରବି ଘରେ ନାହାଁନ୍ତି । ଆଜିଠୁ ସେ ଶୂନ୍ୟସ୍ଥାନ ମୁଁ ପୂରଣ କରିବି । ମା’ ସୁଜାତା, ଆଜିଠାରୁ ଅଧିକା ଜଣକ ପାଇଁ ରନ୍ଧେ ବାନ୍ଧିଦେବୁ ।”

ପନ୍ଦରଦିନ ଗଡ଼ିଗଲା । ତଥାପି ନାରାୟଣ ଯିବାର ନାମ ଧରୁ ନାହାନ୍ତି । ଦିନେ ଅଜୟ ସୁଜାତାକୁ କହିଲା, “ତୁମ କାକା ଆଉ କେତେଦିନ ଏଠାରେ ଆସ୍ଥାନ ଜମାଇବେ ?”

“ମୁଁ କ’ଣ ଜାଣେ ସେସବୁ ? ତୁମେ ତ ନିଜେ ଯାଇ ତାଙ୍କୁ ଡାକି ଆଣିଛ । ତେଣୁ ତାଙ୍କୁ ଏଠାରୁ ପଠାଇବା ଦାୟିତ୍ୱ ମଧ୍ୟ ତୁମର ।” ସୁଜାତା କହିଲା ।

ଅଜୟ ମହା ଅଡୁଆରେ ପଡିଲା । ଗୋଟିଏ ସମସ୍ୟା ସମାଧାନ କରିବାକୁ ଯାଇ ସେ ଆଉ ଏକ ସମସ୍ୟାରେ ପଡ଼ିଲା । କାକା ତ ଶନିଗ୍ରହ ପରି ସବାର ହୋଇ ବସିଛନ୍ତି । କପରି ତାଙ୍କୁ ଏଠାରୁ ବାହାର କରାଯିବ ? ଭାବି ଭାବି ସେ ଏକ ଉପାୟ ଠିକ୍ କଲା । ତା’ର ଜଣେ ବିଧବା ମାଉସୀ ଅଛନ୍ତି । ତାଙ୍କର ରମା ନାମରେ ଝିଅଟିଏ ଅଛି । ରମା ସ୍ୱଭାବରେ ବଡ଼ ନିଷ୍ଠୁର, କଳହପ୍ରିୟ ପୁଣି ଅତ୍ୟନ୍ତ ଅଳସୁଆ, ଦେଖିବାକୁ ମଧ୍ୟ ଭଲ ନୁହେଁ । ତା ପାଇଁ ପାତ୍ର ଖୋଜି ଦେବାକୁ ଥରେ ମାଉସୀ ଅଜୟକୁ କହିଥିଲେ । ଏବେ ସେଇ ବାହାନାରେ କାକା ମହାଶୟଙ୍କୁ ସେଠାକୁ ପଠାଇଦିଆ ଯାଇପାରେ । କାରଣ ଦୁନିଆଯାକର ବରପାତ୍ର କନ୍ୟାପାତ୍ରୀ ତ ତାଙ୍କୁ ଜଣା । ସେ ଏକାମ ଭଲ କରି ତୁଲାଇ ପାରିବେ ।

ପରଦିନ ଅଫିସ୍‌ରୁ ଫେରି ଅଜୟ ନାରାୟଣଙ୍କୁ କହିଲା, “କାକା, ମୋର ଜଣେ ବିଧବା

ମାଉସୀ ଅଛନ୍ତି, ତାଙ୍କର ଝିଅଟିଏ ଅଛି । ଏଯାଏଁନ୍ତ ତା'ର ବିବାହ ହୋଇପାରି ନାହିଁ । ଆପଣ ଯଦି ଦୟାକରି ତା'କୁ କୂଳରେ ଲଗାଇ ପାରନ୍ତେ ତ ଆପଣଙ୍କର ସେ ଉପକାର ମୁଁ ଚିରଦିନ ମନେ ରଖନ୍ତି । ତା'ର ଆଉ କିଏ ଅଛି ।"

"ହଁ, ହଁ, ନିଶ୍ଚୟ । ମୁଁ କାଲି ସେଠାକୁ ଯାଉଛି ।" ନାରାୟଣ ଖୁସି ହୋଇ କହିଲେ ।

ପରଦିନ ସକାଳୁ ସକାଳୁ ନାରାୟଣ ସେଠାକୁ ଗଲେ । ସେ ଯିବା ପରେ ଏମାନେ ବୋଝମୁକ୍ତ ହୋଇ ନିଜକୁ ଟିକିଏ ଉଶ୍ୱାସ ମନେ କଲେ ଓ ହସାହସି ହୋଇ କହିଲେ ରମା ପରି ଝିଅ ପାଇଁ ବର ଖୋଜୁ ଖୋଜୁ କାକାଙ୍କର ସାରା ଜୀବନ ବିତିଯିବ ସିନା, ବର ମିଳିବେ ନାହିଁ । ଆଉ ସେ ମଧ୍ୟ ଏଠାକୁ ଆସି ଆମକୁ ହଇରାଣ କରିବେ ନାହିଁ । ବର ତ ଖୋଜୁଥିବେ ଜୀବନ ସାରା ।

କିନ୍ତୁ ହାୟ, ମାତ୍ର ତିନିଦିନ ପରେ ଦିନେ ସକାଳୁ ଉଠି ଦେଖନ୍ତି ତ ଗାଡ଼ିଟିଏ ତାଙ୍କ ଦୁଆରେ ଠିଆ ହୋଇଛି, ଆଉ ସେଥିରୁ ବାହାରିଲେ କାକା ମହାଶୟ । ମୁହଁରେ ଫୁଲ ଫୁଟୁଛି । ତାଙ୍କୁ ଦେଖି ଅଜୟ ଓ ସୁଜାତା ଚମକି ପଡିଲେ ଓ ଧୀରେ ଧୀରେ କୁହାକୁହି ହେଲେ, "ପୁଣି ବୁଢ଼ା କାହିଁକି ଫେରିଲା ?"

"କ'ଣ କାକା, ରମାର ବାହାଘର ଏତେ ଶିଘ୍ର ଠିକ୍ କରିଦେଲେ ?" ହସି ହସି ଅଜୟ ପଚାରିଲା ।



"ଆରେ ଠିକ୍ କ'ଣ, ଭାବି ନେ ହୋଇଗଲା ବୋଲି । ଏଇଟା ଆଉ ବଡ଼ କାମ କ'ଣ ?" କାକା କହିଲେ ।

"ବର କେଉଁଠିକାର ?" ଅଜୟ ଉତ୍ସୁକ ହୋଇ ପଚାରିଲା ।

"ବର ଆଉ କିଏ ? ସ୍ୱୟଂ ନାରାୟଣ । ତୁମର କାକା ।"

"ସୁଜାତାକୁ ଟିକିଏ ବୟସ ହୋଇଗଲାଣି । ମୋର ତ ସ୍ତ୍ରୀ ମରିଛି । ଦୁହେଁ ଦୁହିଁଙ୍କୁ ପସନ୍ଦ କରିନେଲୁ । ତୁମ ମାଉସୀ ମଧ୍ୟ ସେଥିରେ ବହୁତ ଖୁସି । ଆଗାମୀ ବୁଧବାର ଦିନ ବିବାହ । ତୁମ ଦୁହିଁଙ୍କୁ ନିମନ୍ତ୍ରଣ କରିବାକୁ ଆସିଥିଲି । କିନ୍ତୁ ଆଉ ଗୋଟିଏ କଥା ।" କାକା କହିଲେ ।

"କି କଥା ?" ଅଜୟ ଓ ସୁଜାତା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"କଥା ହେଉଛି କ'ଣ କି ଦୁଇଜଣଙ୍କର କଳି ହେଲେ ତୃତୀୟର ଲାଭ । ତୁମେ ଦୁହେଁ କଳି କଲ ଶେଷକୁ ମୋର ଲାଭ ହେଲା । ସ୍ୱାମୀ ସ୍ତ୍ରୀ ଝଗଡ଼ା ସଦା ସର୍ବଦା ଲାଗି ରହିଥାଏ । କିନ୍ତୁ ତାହା ଶୀଘ୍ର ତୁଟି ଯାଏ । ମୋର ଏହି ବିବାହ ପ୍ରସ୍ତାବ ନ ପଡ଼ିଥିଲେ ମୁଁ ତ ତୁମ ଘରେ ଆଡ୍ଡା ଜମାଇ ମାଗଣାରେ ଖାଇ-ପିଇ ସେହିଠାରେ ପଡ଼ି ରହିଥା'ନ୍ତି କୁଆଡ଼କୁ ଯାଇ ନଥା'ନ୍ତି । ଭଗବାନଙ୍କର ଇଚ୍ଛା । ଏବେ ମୋତେ ଚାକରଟିଏ ଖୋଜିବାକୁ ପଡ଼ିବ । ନହେଲେ ତୁମ ଭଉଣୀକୁ ପୋଷିବି କିମିତି ? ବୁଧବାର ଦିନ ବିବାହ ମନେ ରଖିଥିବ । ମୁଁ ନିମନ୍ତ୍ରଣ କରିବା ପାଇଁ ଆସିଥିଲି ଏବେ ଯାଉଛି ।" ଏତିକି କହି କାକା ଚାଲିଗଲେ ।

ସମାସ୍ୟାର ଏପରି ସମାଧାନ ହେବ ବୋଲି କଳ୍ପନାରେ ସୁଦ୍ଧା ଏମାନେ ଭାବି ନଥିଲେ । "ଏବେ ତୁମ କାକା ମୋର ଭିଣୋଇ ହୋଇଯିବେ ।" ଅଜୟ କହିଲା ଓ ଦୁହେଁ ହସି ହସି ଗଡ଼ିଲେ ।





# ବିଚିତ୍ର ଉଇଲ

ଜେରୁଜେଲମ୍ ନଗରୀରେ ଜାବେଦ୍ ହସନ ନାମକ ଜଣେ ବ୍ୟବସାୟୀ ଥା'ନ୍ତି । ତାଙ୍କର ସହାମତ ନାମରେ ଏକମାତ୍ର ପୁତ୍ର ଥାଏ । ସେ କାମ ପାଇଁ ଦୂର ଦେଶକୁ ଗଲେ ଘର, ପାଠଶାଳା ସବୁ କାମ ସହାମତହିଁ ବୁଝୁଥାଏ ।

ଥରେ ଜାବେଦ୍ ବ୍ୟବସାୟ କରିବା ପାଇଁ ବହୁତ ଦୂର ଦେଶକୁ ଗଲେ । ତାଙ୍କ ସହିତ ଗୁଲାମ ଖୁର୍ସିଦ ମଧ୍ୟ ଥିଲା । ହଠାତ୍ ତାଙ୍କର ଦେହ ଖରାପ ହୋଇଗଲା । ଏତେ ଦୂରରେ ଥାଇ ସେ ସଲାମତ କଥାହିଁ ଖାଲି ଭାବିଲେ । ଏବେ ଯଦି ସେ ମୃତ୍ୟୁ ପୂର୍ବରୁ କୌଣସି ଯଥାର୍ଥ ବ୍ୟବସ୍ଥା ନ କରନ୍ତି ତେବେ ଖୁର୍ସିଦ ସବୁ ପଇସା ନେଇଯିବ, ସେ ପରିଚାରକ ହେଲେ ମଧ୍ୟ ବହୁତ ଚତୁର ଓ ସ୍ୱାର୍ଥପର । ଏହି କଥା ଚିନ୍ତା କରି କରି ଶେଷରେ ସେ ମନରେ କିଛି ଠିକ୍ କରି ଖୁର୍ସିଦକୁ କହିଲେ ଜଣେ ଓକିଲକୁ ଡାକିବା ପାଇଁ ।

ରସୀଦ ନାମରେ ଜଣେ ଓକିଲ ଆସିଲେ । ଜାବେଦ୍‌ଙ୍କ କହିବା ଅନୁସାରେ ସେ ଉଇଲ୍ ଲେଖିଲେ । ଉଇଲ୍‌ରେ ଲେଖାଥିଲା, "ମୋର ମୃତ୍ୟୁ ପରେ ମୋର ଚାକର ଖୁର୍ସିଦହିଁ ସମସ୍ତ ସମ୍ପତ୍ତି ପାଇବ । ମୋର ପୁତ୍ର ସେଥିରୁ କେବଳ ତା'ର ମନ ଚାହୁଁଥିବା ବା ପସନ୍ଦ ମୁତାବକ ଗୋଟିଏ କିଛି ପାଇବ ।—ଜାବେଦ"

ତା'ର ଅଳ୍ପଦିନ ପରେ ସେହି ବିଦେଶରେହିଁ ଜାବେଦ୍‌ଙ୍କର ମୃତ୍ୟୁ ହୋଇଗଲା । ଜାବେଦ୍‌ଙ୍କ ମୃତ୍ୟୁ ପରେ ତାଙ୍କ ପରିଚାରକ ଖୁର୍ସିଦ ସେହି ଉଇଲ୍‌ଟି ନେଇ ଗ୍ରାମକୁ ଫେରିଲା ଓ ଜାବେଦ୍‌ଙ୍କର ସମସ୍ତ ସମ୍ପତ୍ତି ନିଜ ଅଧୀନରେ ରଖିଲା । ପିତାଙ୍କର ମୃତ୍ୟୁ ବିଷୟରେ ଯେତେବେଳେ ସଲାମତ କିଛି ପଚାରିଲା, ଖୁର୍ସିଦ

ଇହୁଦି ଲୋକକଥା

ସେତେବେଳେ କହିଲା, ଯେ ତାଙ୍କର ହଠାତ୍ ମୃତ୍ୟୁ ହୋଇଗଲା ଓ ତା' ପୂର୍ବରୁ ସେ ସବୁ କିଛି ସମ୍ପତ୍ତି ତା' ନାମରେ କରିଦେଇ ଯାଇଛନ୍ତି । କାଗଜଟି ସେ ମାଲିକର ପୁଅକୁ ଦେଖାଇଲା ମଧ୍ୟ । କେବଳ ଗୋଟିଏ କଥା । ସଲାମତର ଇଚ୍ଛା ଅନୁସାରେ ପିତାଙ୍କ ସମ୍ପତ୍ତିରୁ ସେ ଗୋଟିଏ ମାତ୍ର ଜିନିଷ ପସନ୍ଦ କରି ନେଇ ପାରିବ ।

ସଲାମତ ପିତାଙ୍କର ଏପରି ଉଇଲ୍ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ ନିଜକୁ ବହୁତ ଅସହାୟ ମନେକଲା । ତା'ପରେ ଧୈର୍ଯ୍ୟ ଧରି ସେ ପିତାଙ୍କର ବନ୍ଧୁ ୟୁନୁସ୍‌ଙ୍କ ପାଖକୁ ଯାଇ ସବୁ ଘଟଣା କହିଲା । ୟୁନୁସ୍ ଥିଲେ ଜାବେଦ୍‌ଙ୍କର ଘନିଷ୍ଠ ଓ ପୁରାତନ ବନ୍ଧୁ । ତା'ଛଡ଼ା ସେ ଥିଲେ ଅତ୍ୟନ୍ତ ବୁଦ୍ଧିମାନ । ସେ ସବୁକଥା ଠିକନିଖି କରି ଶୁଣିଲେ ଓ କହିଲେ, "ସଲାମତ୍, ତୋ ପିତା ଅନେକ ବୁଦ୍ଧି ଖର୍ଚ୍ଚ କରି ଏ ଉଇଲ୍ କରିଛନ୍ତି । ତୁ ଯେପରି ସବୁ ସମ୍ପତ୍ତି ପାଇବୁ ମୁଁ ତା'ର ବ୍ୟବସ୍ଥା କରିବି । ଗୁଲାମ୍ ଖୁର୍ସିଦକୁ କାଲି ଉଇଲ୍ ସହ କଚେରୀକୁ ଆସିବାକୁ କହ । ତୁ ଓ ମୁଁ ଦୁହେଁ ସେଠାରେ ଉପସ୍ଥିତ ରହିବା । ମୋ କହିବା ଅନୁସାରେ ତୁ କାମ କରିବୁ ।"

ପରଦିନ ସକାଳୁ ସମସ୍ତେ କଚେରୀକୁ ଗଲେ । ବିଚାରପତି ଉଇଲ୍‌ଟି ପଢ଼ି ଶୁଣାଇ ଦେବା ପରେ ସଲାମତ୍‌କୁ ପଚାରିଲେ, "ଏବେ ତୁମର ପସନ୍ଦ ମୁତାବକ ପିତାଙ୍କ ସମ୍ପତ୍ତିରୁ ଗୋଟିଏ କିଛି ବାଛି ନିଅ ।"

ତତ୍‌କ୍ଷଣାତ୍ ସଲାମତ୍ କହିଲା, "ହଜୁର, ପିତାଙ୍କର ଏଇ ଦାସ ଖୁର୍ସିଦକୁହିଁ ମୁଁ ଚାହେଁ ।" ବିଚାରପତି ସଙ୍ଗେ ସଙ୍ଗେ ଆଦେଶ ଦେଲେ, "ଆଜିଠାରୁ ସେ ସଲାମତ୍‌ର ଦାସ ହୋଇ ରହିଲା ।" ସଲାମତ୍ ଏହିପରି ୟୁନୁସଙ୍କ ସାହାଯ୍ୟ ନେଇ ଖୁର୍ସିଦ ସହିତ ସମସ୍ତ ସମ୍ପତ୍ତି ଫେରି ପାଇଲା ।





# ଶେଷ କାହାଣୀ

ସଞ୍ଜୟ ତା' ଗାଁ ମୁକୁନ୍ଦପୁରରୁ ବାହାରି ପୁରୀ ଅଭିମୁଖେ ଯାଉଥାଏ । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଲୋକେ ବାଟ ଚାଲିବାକୁ କୁଣ୍ଠାବୋଧ କରୁନଥାନ୍ତି । ଆଜିକାଲି ଭଳି ଏତେ ରକମର ଗାଡ଼ି ସେତେବେଳେ ନଥିଲା ।

ବାଟରେ ସଞ୍ଜ ହୋଇ ଆସିଲା । ପୁରୀ ଆହୁରି ଚାରି ପାଞ୍ଚ ଘଣ୍ଟାର ବାଟ । ସଞ୍ଜୟ ସେଇଠି ବାଟରେ ଗୋଟିଏ ଚଟିଘରେ କଟାଇବାକୁ ସ୍ଥିର କଲା ଓ ଚଟିଘର ମାଲିକ ସହ ସେ କଥାବାର୍ତ୍ତା କରି ଗୋଟିଏ କୋଠରୀ ଭଡ଼ାରେ ନେଲା ।

ସେ ଚଟିଘରଟି ଯେଉଁ ଗାଁ ପାଖରେ ଅବସ୍ଥିତ ଥିଲା, ତାହା ଗୋଟାଏ ଥିଲାବାଲା ଲୋକଙ୍କ ଗାଁ । ସେ ଗାଁରେ ଚାରି ଯୁବକ ଥିଲେ । ସେମାନେ ଠାପୁଆଙ୍କ ଗୁରୁ । ନିଜେ ଖଟିବେ ନାହିଁ, କିନ୍ତୁ ଖଟି ଆୟ କରୁଥିବା ଲୋକଙ୍କୁ ଠକି ଯେତେ ପାରିବେ ମାରିନେବେ ।

ସକାଳେ ସେମାନେ ସଞ୍ଜୟକୁ ଦେଖିଲେ । ସଞ୍ଜୟ ତା' କାନ୍ଧରେ ଖଣ୍ଡିଏ ମୂଲ୍ୟବାନ ନୂଆ ଚଦର ପକାଇଥାଏ । ସେଖଣ୍ଡି କିପରି ତାହାଠୁଁ ହସ୍ତଗତ କରିବେ, ଚାରିହେଁ ସେହି ଫିକର କଲେ ।

ସେମାନେ ଯାଇ ସଞ୍ଜୟ ସହ ଗପ ଜମାଇଲେ । ତାକୁ ସେମାନେ କହିଲେ କି ସେ ତରବର ହୋଇ ଲାଭ ନାହିଁ । କାରଣ ତାକୁ ଯେଉଁ ନଈ ପାରି ହେବାକୁ ପଡ଼ିବ, ସେଠାକୁ ନାଉରିଆ ବେଳ ଦୁଇଘଡ଼ି ହେବା ପୂର୍ବରୁ ଆସିବ ନାହିଁ ।

"ସତ? ବେଶ୍ । ମୋତେ ଏକଥା କହି ଭଲ କଲ । ନହେଲେ ମୁଁ ଯାଇ ଏକୁଟିଆ ନଈ କୂଳରେ ବସି ରହିଥାନ୍ତି । ଏଠାରେ

ସେତକ ସମୟ ତମମାନଙ୍କ ସହ ଗପସପ କରି କଟାଇ ପାରିବ ।" ସଞ୍ଜୟ ଖୁସି ହୋଇ କହିଲା ।

"ଆରେ ଭାଇ, ତମକୁ ଭେଟି ଆମେ ବହୁତ ଖୁସି ।" ଯୁବକମାନେ କହିଲେ ।

ଯେତେବେଳେ ସେମାନେ ବୁଝିଲେ ଯେ ସଞ୍ଜୟ ସେମାନଙ୍କୁ ବହୁ ଭଲ ଦେଖୁଛି, ସେତେବେଳେ ସେମାନେ କହିଲେ, "ଭାଇ, ଆମେ ଏଠି ଗୋଟାଏ ନୂଆ ଧରଣର ଖେଳ ଖେଳଥାଉଁ । ପ୍ରତ୍ୟେକେ ଗୋଟାଏ ଗୋଟାଏ ଗପ କହିବେ । ଅନ୍ୟମାନଙ୍କୁ ଧୈର୍ଯ୍ୟ ଧରି ତାହା ଶୁଣିବାକୁ ହେବ । ଯିଏ କହିପକାଇବ କି ଗପଟି ମିଛ, ତା'ର ହାର ହେଲା । ସେତେବେଳେ ତାକୁ ତା'ର ଚଦର ବା ଜାମା ବାହାର କରି ଗପୁଡିକୁ ଦେଇଦେବାକୁ ହେବ । ଖେଳିବ ?"

"ହଁ, ହଁ, ନିଶ୍ଚୟ !" ସଞ୍ଜୟ କହିଲା ।

ସେ ଚାରି ଯୁବକ ଭିତରୁ ପ୍ରଥମ ଜଣେ କହିଲା, "ମୁଁ ଯେତେବେଳେ ମାତୃଗର୍ଭରେ, ସେତେବେଳେ ଥରେ ଶୁଣିଲି କି ମା ଗୋଟାଏ ଫଳ ଖାଇବାକୁ ଚାହୁଁଛନ୍ତି । ଯଥା ସମୟରେ ମୁଁ ଜନ୍ମ ନେଲି । ମୁଁ ଦିନକର ହୋଇଥାଏଁ । ମା ନିଦରେ ଶୋଇଥାନ୍ତି । ମୁଁ ବାହାରି ଯାଇ ସଙ୍ଗେ ସଙ୍ଗେ ଗୋଟାଏ ଘୋଡ଼ା ଛୁଟାଇ ବଣକୁ ଯାଇ ଫଳଟି ଆଣି ଚୁପ୍‌ଚାପ୍ ମା ଶେଯରେ ଥୋଇଦେଲି । ଫଳଟି କେମିତି କେଉଁଠୁ ସେଠାକୁ ଆସିଲା, ତାହା କେହି ବୁଝିପାରିଲେ ନାହିଁ ।"



ସଞ୍ଜୟ ଏପରି ଭାବରେ ମୁଣ୍ଡ ହଲାଇଲା, ସତେ ଅବା ସେ କାହାଣୀରେ ଅଜବ୍ ବା ଅସ୍ୱାଭାବିକ କଥା କିଛି ନାହିଁ । ଅନ୍ୟ ତିନି ଶ୍ରୋତା ବି ସେମିତି ମୁଣ୍ଡ ହଲାଇଲେ ।

ତା'ପରେ ଦ୍ୱିତୀୟ ଯୁବକର ପାଳି ପଡ଼ିଲା । ସେ ଆରମ୍ଭ କଲା, "ସେତେବେଳେ ମୋ ବୟସ ସାତଦିନ । ଆମ୍ବ ଖାଇବାକୁ ଭାରି ମନ ହେଲା । ମୁଁ ଯାଇ ଗଛ ତ ଚଢ଼ିଗଲି ଉତ୍ସାହରେ, କିନ୍ତୁ ଓହ୍ଲାଇବି କିପରି ? ତେଣୁ ମୁଁ ଘରକୁ ଯାଇ ଗୋଟାଏ ସିଢ଼ି ଆଣି ଗଛ ଦେହରେ ଡେରିଦେଲି ଓ ତା'ପରେ ସୁରୁଖୁରୁରେ ଓହ୍ଲାଇ ଆସିଲି ।" ପୁଣି ସଞ୍ଜୟ ସାଧାରଣ ସ୍ୱାଭାବିକ ଘଟଣାଟିଏ ଶୁଣିଲା ଭଳି ମୁଣ୍ଡ ହଲାଇଲା । ଅନ୍ୟ ତିନିହେଁ ବି ସେଇଆ କଲେ ।

ତା'ପରେ ପଡ଼ିଲା ତୃତୀୟ ଯୁବକର ପାଳି । ସେ କହିଲା, "ଥରେ ମୁଁ ନଈ କୂଳେ କୂଳେ ବାଟ ଚାଲୁଛି, ଗୋଟାଏ ମହାବଳ ବାଘ ନଈ ପାଣିରୁ ମୋ ଆଡ଼େ କୁଦି ଆସିଲା । ମୁଁ ତାକୁ ଧରି ପକାଇ ଦୁଇଫାଳ କରି ନଈକୁ ଫୋପାଡ଼ି ଦେଲି । ଅବଶ୍ୟ କିଛି ସମୟ ପରେ ଦୁଇଫାଳ ଯାକ ସୁଅରେ ପାଖକୁ ଲଗି ଆସି ଯୋଡ଼ି ହୋଇଗଲେ ଓ ବାଘ ପୁଣି ଗୋଟାପଣ ହୋଇ ନଈରେ ଯେମିତି ଥିଲା ସେମିତି ରହିଲା ।"

ସଞ୍ଜୟ ମୁଣ୍ଡ ହଲାଇ ଦେଲା । ଅନ୍ୟମାନେ ବି ସେଇଆ କଲେ ।

ଚତୁର୍ଥ ଯୁବକ କହିଲା, "ଥରେ ମୁଁ ନୌକାରେ ଯାଉଥାଏଁ, ଭାରି ଢେଉ ଲଗିଲା । ମୁଁ ନଈ ଭିତରକୁ ଡେଇଁ ପଡ଼ିଲି । ପାଣି



ଭିତରେ ଗୋଟାଏ ପାହାଡ଼ ପ୍ରମାଣ ମାଛ ପାଇ ସେଇଠି ନିଆଁ ଜାଳି ତାକୁ ସିଝାଇ ଖାଇଲି ଓ ତା'ପରେ ପାଣି ଉପରକୁ ଭାସି ଉଠି ପୁଣି ନୌକା ଭିତରକୁ ଆସି ଗନ୍ତବ୍ୟ ସ୍ଥାନ ଅଭିମୁଖେ ଚାଲିଲି ।"

ସଞ୍ଜୟ କହୁଛି ନ କହି ଏମିତି ଭାବ ଦେଖାଇଲା, ଯେମିତିକି ସେ ଗପ ସତ ! ଅନ୍ୟ ତିନିହେଁ ବି ସେମିତି ଭାବ ଦେଖାଇଲେ ।

ବର୍ତ୍ତମାନ ସେମାନଙ୍କ ପାଳି ତ ସରିଲା, ପଡ଼ିଲା ସଞ୍ଜୟର ପାଳି । ସେତେବେଳକୁ ତିନି ଚାରିଜଣ ସ୍ଥାନୀୟ ଭଦ୍ରଲୋକ ବାରଣ୍ଡାରେ ବସି ସେମାନଙ୍କ କଥା ଶୁଣୁଥାନ୍ତି ।

ସଞ୍ଜୟ ଗପିଲା : ଥରେ ଜଣେ ସନ୍ନ୍ୟାସୀ ମୋତେ ଗୋଟାଏ ଅଦ୍ଭୁତ ଫଳ ଦେଲେ । ମୁଁ ତାକୁ ଆଣି ମୋ ବଗିଚାରେ ପୋତିଲି । ସେଥିରୁ ଗଛ ହେଲା ଓ ଯଥାସମୟରେ ସେ ଗଛରେ ଚାରିଗୋଟି ଫଳ ଫଳିଲା । ସେ ଫଳ ପାଚି ଫାଟିବା ବେଳକୁ ସେଥିରୁ ବାହାରି ଆସିଲେ ଚାରିଗୋଟି ବାଳକ । ସେମାନେ ମୋ ଭୃତ୍ୟ ରୂପେ ମୋଠି ଥା'ନ୍ତି ଓ ବଡ଼ ହେଉଥାନ୍ତି । ହଠାତ୍ ଦିନେ ସେମାନେ କୁଆଡ଼େ ଚାଲିଗଲେ । ମୁଁ ସେମାନଙ୍କୁ ଖୋଜିବାକୁ ବାହାରିଲିଣି କେତେଦିନ ହେଲା । ଆଜି ସେ ଚାରିଗୋଟି ଟୋକାଙ୍କୁ ପାଇଛି । ସେ ଚାରିଜଣ ତମେମାନେ । ଚାଲ ମୋ ସାଙ୍ଗରେ ।"

ବର୍ତ୍ତମାନ ସେ ଚାରି ଯୁବକ ମହାଅଡୁଆରେ ପଡ଼ିଲେ । ସେମାନେ ଯଦି କହିବେ ଏହା ମିଛ, ତେବେ ନିଜ ନିଜ ଜାମା ଦେଇଦେବାକୁ ହେବ । ଯଦି କହିବେ ଏହା ସତ, ତେବେ ସଞ୍ଜୟ ସହ ଯିବାକୁ ପଡ଼ିବ ।

ଶୁଣୁଥିବା ଭଦ୍ରଲୋକମାନେ ସେ ଚାରି ଯୁବକଙ୍କ ମତଲବ୍ ବୁଝୁଥିଲେ । ସେମାନେ କହିଲେ, "ସର୍ତ୍ତ ଅନୁସାରେ କାମ କର ।"

ଯୁବକମାନେ ନିଜ ନିଜ ଜାମା ଖୋଲି ସଞ୍ଜୟ ହାତରେ ଦେଇ ମୁଣ୍ଡ ତଳକୁ କରି ଚାଲିଗଲେ ।



# ପ୍ରକୃତିର ବିସ୍ମୟ!



## ଜଳହୀନ ପ୍ରଦେଶ

କୁହାଯାଏ ଯେ ଚିଲି ଦେଶର ଆଟକାମା ମରୁଭୂମି ସାରା ପୃଥିବୀରେ ଏକମାତ୍ର ସ୍ଥାନ ଯେଉଁଠାରେ କୌଣସି ପ୍ରକାର ଜଳ ମିଳେ ନାହିଁ। ପ୍ରାୟ ୪୦୦ ବର୍ଷ ହେବ ସେଠାରେ ଭଲଭାବରେ ବର୍ଷା ଟିକିଏ ହୋଇ ନାହିଁ।

## ଭୂଗର୍ଭରେ ପୁଷ୍ପିତ ବୃକ୍ଷ



ଅଷ୍ଟ୍ରେଲିଆରେ ଏକ ପ୍ରକାର ଫୁଲ ମିଳେ ତାହା ଭୂଇଁ ଭିତରେହିଁ ଗଛ ହୋଇ ଫୁଟିଥାଏ। ଏହାର ନାମ ରିଜାନ ଥେଲିଆ ଗାର୍ଡନେରି।




## ମହାବୃକ୍ଷ

ସମଗ୍ର ପୃଥିବୀର ବୃହତ୍ତମ ବୃକ୍ଷଟି କାଲିଫର୍ଣ୍ଣିଆରେ ଅଛି। ସ୍ଥାନୀୟ ଲୋକେ ଆଦରରେ ଏହାର ନାମ ଦେଇଛନ୍ତି ଜେନେରାଲ୍ ସର୍ମ୍ୟାନ୍। ଏହାର ଉଚ୍ଚତା ୨୭୨ ଫୁଟ। ଏହାର ବ୍ୟାସ ୭୯.୧ ଫୁଟ ଓ ଏହାର ଓଜନ ୨୦୩୦ ଟନ୍।

Anil Kumar Panigrahy

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।

* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।

* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।

* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।

* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।

* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଂସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଫେବ୍ରୁଆରି ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



S. Balasubramanian



S. B Prasad

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଡିସେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

ଅକ୍ଟୋବର '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ରୋଗ ଯେମିତି !

ଦ୍ୱିତୀୟ ଚିତ୍ର : ବୈଦ୍ୟ ସେମିତି !!

ପୁରସ୍କାର ବିଜୟୀ : ଶେଖ୍ ମହମ୍ମଦ ସାହାବୁଦ୍ଦିନ୍, କେଉଁଝର।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

---

## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :
ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ବଡ଼ପଳନୀ, ମାଡ୍ରାସ-୬୦୦୦୨୬
ଅନ୍ୟ ଦେଶ ପାଇଁ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାରେ ଲେଖନ୍ତୁ :
ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published...